# ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା

## ଶ୍ରୀକ୍ଷେତ୍ରଧାମର ବିବରନ

ଭବାନୀ ଚରନ ବନ୍ଦ୍ୟୋପାଧ୍ୟାୟ



ସଂପାଦନା

ଗୌରାଙ୍ଗ ଚରଣ ଦାଶ

# ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା

## ଅର୍ଥାତ୍

## ଶ୍ରୀକ୍ଷେତ୍ରଧାମର ବିବରନ

ଭବାନୀ ଚରଣ ବନ୍ଦ୍ୟୋପାଧ୍ୟାୟ କର୍ତ୍ତୃକ ସଂଗୃହୀତ

ସମାଚାର ଚନ୍ଦ୍ରିକା ଯନ୍ତ୍ରେ ୧୭୬୬ ଶକାବ୍ଦ
ବା ୧୨୫୧ ସାଲରେ ମୁଦ୍ରିତ

---

ସଂପାଦନା
ଗୌରାଙ୍ଗ ଚରଣ ଦାଶ

ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା
ଭବାନୀ ଚରଣ ବନ୍ଦ୍ୟୋପାଧ୍ୟାୟ

ସଂପାଦନା: ଗୌରାଙ୍ଗ ଚରଣ ଦାଶ

ଯୋଗାଯୋଗ : ଆନନ୍ଦ ଆଶ୍ରମ, କୁଟାରୀମୁଣ୍ଡା,
ଖମାର, ଅନୁଗୁଳ-୭୫୯୧୧୮

ମୁଦ୍ରଣ : ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ,
ଭୁବନେଶ୍ୱର-୭

ପ୍ରଥମ ସଂସ୍କରଣ : ୧୮୪୪ ମସିହା (୧୨୫୧ ସାଲ)
ଦ୍ୱିତୀୟ ସଂସ୍କରଣ : ସେପ୍ଟେମ୍ବର, ୨୦୧୧

ମୁଦ୍ରଣ ସଂଖ୍ୟା : ୧୧୦୦

ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ

ମୂଲ୍ୟ : ଟ. ୬୫/-

**Sri Purusottam Chandrika**
Bhawani Charan Bandyopadhyaya
Edited by: Gauranga Charan Dash

Contact : Ananda Ashram
Kutarimunda, Khamar, Angul-759118

Printed at : Sriram Screen Printing,
Bhubaneswar-7

First edition : 1844 (1251 Sal)
Second edition : September, 2011

Copies : 1100

Cover : Ramakanta Samantaray

Price : ₹ 65 /-

---

Published with Financial Assistance from the Central Institute of Indian Languages (Ministry of Human Resource Development, Department of Higher Education, Govt. of India), Manasgangotri, Mysore-570 006 vide sanction letter No. **F.51-8(17A)/2009-10/ORI/GRNT** dated.**10th MAY,2011** under the scheme of Grant-in-Aid.

# ବିଷୟ କ୍ରମ

# ସ୍ୱୀକାରୋକ୍ତି

୧୮୭୯ ମସିହାରେ ପ୍ରକାଶିତ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ 'ଓଡ଼ିଶାର ଇତିହାସ' ବହିରେ ପ୍ରଦତ୍ତ କେତେକ ତଥ୍ୟକୁ ଆଧାର କରି ଓଡ଼ିଶାର ପତ୍ରପତ୍ରିକାରେ କେତେ ମାସ ଧରି ବିତର୍କ ଲାଗିରହିଥିଲା । ଏହାର କାରଣ ଓ ଓଡ଼ିଶାର ଇତିହାସ ଚର୍ଚ୍ଚା ସଂପର୍କରେ ତଥ୍ୟ ଖୋଜା ଅବସରରେ, ହରେକୃଷ୍ଣ ମହତାବଙ୍କ 'ଓଡ଼ିଶା ଇତିହାସ' ବହିରୁ ଭବାନୀ ଚରଣ ବନ୍ଦ୍ୟୋପାଧ୍ୟାୟଙ୍କ ରଚିତ ' ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା'ର ଉଦ୍ଧୃତି ମୋ ଆଖିରେ ପଡ଼ିଥିଲା । ବହି ଖଣ୍ଡିକ ଖୋଜୁଥିଲି, ମାତ୍ର ପାଉ ନଥିଲି । ଏବଂ, ଦିନେ ଶ୍ରୀ ଦେବେନ୍ଦ୍ର କୁମାର ଦାଶ ମୋର ଏହି ଖୋଜ୍‌ରେ ପୂର୍ଣ୍ଣଛେଦ ପକାଇଥିଲେ । କହିଲେ, ବହିର ଏକ ପ୍ରତିଲିପି ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ରହିଛି । ଏହି ସୂଚନା ମୋ'ପାଇଁ ଯଥେଷ୍ଟ ଥିଲା । ସଂଗ୍ରହାଳୟର ସଂପୃକ୍ତ ବିଭାଗର ମୁଖ୍ୟ ଡକ୍ଟର ଭାଗ୍ୟଲିପି ମଲ୍ଲଙ୍କ ସାହାଯ୍ୟ ଲୋଡ଼ିଥିଲି । ସେ ସ୍ୱୀକୃତିର ହାତ ବଢ଼ାଇଥିଲେ । ପ୍ରତିଲିପିର ଫଟୋକପିଟିଏ ଦେବାକୁ କୁଣ୍ଠିତ ହୋଇ ନଥିଲେ ।

ତେଣୁ ପ୍ରଥମରୁ ମୁଁ ଶ୍ରୀଯୁକ୍ତ ଦାଶ ଓ ଡକ୍ଟର ମଲ୍ଲଙ୍କୁ କୃତଜ୍ଞତା ଜଣାଉଛି । ଦ୍ୱିତୀୟରେ ମୁଁ ଶ୍ରଦ୍ଧା ଓ ଧନ୍ୟବାଦ ଜଣାଇବି ଶ୍ରୀ ଅସିତ ମହାନ୍ତିଙ୍କୁ । ସେ ବହିର ମୁଦ୍ରଣପାଇଁ ମୋତେ ଉତ୍ସାହିତ କରିଥିଲେ । ତାହା ନୀରବ ଉତ୍ସାହ ନଥିଲା । ଥିଲା ଅନ୍ତରଂଗ ଓ ମୋହମୁକ୍ତ । ଭାରତୀୟ ଭାଷା ସଂସ୍ଥାନ, ମହୀଶୂରକୁ ଏହାର ମୁଦ୍ରଣପାଇଁ ଅର୍ଥବ୍ୟବସ୍ଥା କରିବାକୁ ସେ ଦରଖାସ୍ତ ବି ଲେଖାଇଥିଲେ । ଏବେ ପ୍ରକାଶିତ ହେଉଥିବା ବହି ସଂସ୍ଥାନ ଅନୁଦାନର ଫଳ । ତେଣୁ ଶ୍ରୀ ମହାନ୍ତି ଓ ସଂସ୍ଥାନର କର୍ମକର୍ତ୍ତାମାନଙ୍କ ପାଖରେ ଋଣ ସ୍ୱୀକାର କରୁଛି ।

**ଗୌରାଙ୍ଗ ଚରଣ ଦାଶ**

ସେପ୍ଟେମ୍ବର, ୨୦୧୧

শ্রীশ্রীজগন্নাথঃ

শ্রীভবানীচরণ বন্দ্যোপাধ্যায় কর্ত্তৃক

সংগৃহীতা



# পুরুষোত্তম চন্দ্রিকা ।

অর্থাৎ

# শ্রীক্ষেত্রধামের বিবরণ ।



সমাচার চন্দ্রিকা যন্ত্রে মুদ্রিতা

হইল ইতি।



১৭৬৬ শকাব্দ

১২৫১ সাল।

ପ୍ରଥମ ବଙ୍ଗଳା ସଂସ୍କରଣର ପ୍ରଚ୍ଛଦ
ସୌଜନ୍ୟ : ପ୍ରଫେସର ଗଗନେନ୍ଦ୍ରନାଥ ଦାଶ

# ଅବତରଣିକା

**ଏକ**

'ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା' ବଙ୍ଗ ଭାଷାରେ, ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟଙ୍କ ଲିଖିତଏକ ଭିନ୍ନ ସ୍ୱାଦର ବହି। ପ୍ରକାଶକାଳ ୧୮୬୬ ଶକାବ୍ଦ ବା ୧୨୫୧ ସାଲ (୧୮୪୪ ମସିହା) ଏବଂ ମୁଦ୍ରଣ ସ୍ଥାନ 'ସମାଚାର ଚନ୍ଦ୍ରିକା ଯନ୍ତ୍ରାଳୟ' । ମୋର ହସ୍ତଗତ ହୋଇଥିବା ବହିଟି ମୂଳ ବହିର ଓଡ଼ିଆ ଅକ୍ଷରାୟଣ । ଏହାର ପ୍ରତିଲିପିକାର ଶ୍ରୀ ବିଜୟ କୁମାର ଦାସ । ଏଥିରେ ବିଖ୍ୟାତ ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ ସନ୍ତକ ମଧ୍ୟ ରହିଛି। ସନ୍ତକର ତାରିଖ ତା ୨୦.୭.୧୯୫୧ । ପାଣ୍ଡୁଲିପିଟି ପଢ଼ିବାବେଳେ ମୋ ମନରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଜନ୍ମ ନେଇଥିଲା । ପ୍ରଥମତଃ, ସେହି କାଳରେ ଜଣେ ବଙ୍ଗାଳୀଙ୍କଦ୍ୱାରା ଲେଖାଯାଇଥିବା ଓଡ଼ିଶାର ଇତିହାସ ଓ ତୀର୍ଥକ୍ଷେତ୍ର ସଂକ୍ରାନ୍ତ ବହି, ଏବଂ, ଦ୍ୱିତୀୟତଃ, ଏହି ବହିର ଓଡ଼ିଆ ଭାଷାରେ ପ୍ରତିଲିପିର ପୁନର୍ମୁଦ୍ରଣର କ'ଣ ଆବଶ୍ୟକତା ରହିଛି ? ଏହି ଦୁଇଗୋଟି ପ୍ରଶ୍ନର ଉତ୍ତରରେ ମୁଁ ଏତିକି କହିବି, ବହିର ଲେଖକ ବଙ୍ଗାଳୀ ଏବଂ ଏହା ବଙ୍ଗଳା ଭାଷାରେ ବଙ୍ଗାଳୀମାନଙ୍କପାଇଁ ଅବଶ୍ୟ ଲେଖାଯାଇଛି । ମାତ୍ର ଆଜି, ବଙ୍ଗାଳୀମାନଙ୍କପାଇଁ ଏହି ବହିର ପୁନର୍ମୁଦ୍ରଣର ଆବଶ୍ୟକତା ନାହିଁ । ଓଡ଼ିଆମାନେ କିନ୍ତୁ ବହି ସଂପର୍କରେ ଅବହିତ ହେବା ନିହାତି ଜରୁରୀ। ବହି ପଢ଼ି ସେମାନେ ନିଶ୍ଚିତ ହେବେ ଯେ ସମକାଳରେ ବଙ୍ଗାଳୀମାନଙ୍କ ସହିତ ସେମାନଙ୍କ ସଂପର୍କ ତିକ୍ତ ନଥିଲା, ଅନ୍ତରଙ୍ଗ ଥିଲା । ତାହା ହୋଇ ନଥିଲେ, ଜଣେ ବଙ୍ଗାଳୀ ଓଡ଼ିଶାର ରାଜନୀତିକ ଓ ସାଂସ୍କୃତିକ ଇତିହାସ ଆଧାରିତ ବହି ଖଣ୍ଡିଏ ଲେଖି କାହିଁକି ନିଜେ ଛାପିଥାନ୍ତେ ? ପୁନଶ୍ଚ ବଙ୍ଗଳା ବହିକୁ ଆଜି ଓଡ଼ିଆ ଲିପିରେ ଛାପିବାର କାରଣ, ଏହାକୁ ବଙ୍ଗଳା ଲିପି ଜାଣି ନଥିବା ଓଡ଼ିଆମାନେ ପଢ଼ିବାରେ ସୁଯୋଗ ପାଇବେ । ବହିର ବିଷୟ ବୁଝିବାକୁ ଓଡ଼ିଆମାନଙ୍କୁ ଧାପେ ବି ଅସୁବିଧା ହେବ ନାହିଁ । କାରଣ, ଓଡ଼ିଆ ଓ ବଙ୍ଗଳା ଭାଷା ମଧ୍ୟରେ ସାଦୃଶ୍ୟ ବେଶ୍ ଘନ । ଲାଗିବ, ଯେପରି ଦୁଇ ଭଉଣୀ । ଭାଷା ବିଜ୍ଞାନୀମାନେ ଏକଥା ସ୍ୱୀକାର କରିଛନ୍ତି । ତେଣୁ ଜଣେ ଆଧୁନିକ ବଙ୍ଗାଳୀକୁ ଓଡ଼ିଆମାନଙ୍କ ନିକଟରେ ପହଞ୍ଚାଇବାପାଇଁ ବହି ଖଣ୍ଡିକ ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ । ସେହି ନ୍ୟାୟରେ ମୁଦ୍ରଣଯୋଗ୍ୟ ।

## ଦୁଇ

ଭବାନୀ ଚରଣ, ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରିଟିଶ୍ ଉପନିବେଶବାଦର ଅନ୍ୟତମ ସଚେତନ ବ୍ୟକ୍ତିତ୍ୱ । ଜନ୍ମ ଚବିଶ ପ୍ରଗଣା, ୧୭୮୪ ମସିହା । ଜାତିରେ ବ୍ରାହ୍ମଣ । ସମକାଳରେ, ଗ୍ରାମାଞ୍ଚଳର ବ୍ରାହ୍ମଣ ଓ କାୟସ୍ଥମାନେ କଲିକତା ସହରକୁ ଆସିଛନ୍ତି । ଭବାନୀ ଚରଣ ସେହିମାନଙ୍କ ମଧ୍ୟରୁ ଜଣେ । ସେ ସଂସ୍କୃତ, ଇଂରାଜୀ ଓ ଆପଣା ଭାଷାକୁ ଭଲ ଭାବରେ ଆୟତ୍ତ କରିଛନ୍ତି । ମାତ୍ର ୧୬ ବର୍ଷ ବୟସରେ ତାଙ୍କ କର୍ମମୟ ଜୀବନ ଆରମ୍ଭ ହୋଇଛି, ଜେ ଡକେଟ୍ ଆଣ୍ଡ କମ୍ପାନୀ ନାମକ ଏକ ବାଣିଜ୍ୟିକ ପ୍ରତିଷ୍ଠାନରେ । ସେଠାରେ ଦୀର୍ଘ ଏଗାର ବର୍ଷର ରହଣି । ପରେ କଲିକତାର ବିଶପ୍ ମିଡ଼ିଲ୍‌ଟନ୍‌ଙ୍କ ସଚିବ ଏବଂ ହୁଗୁଳି କଲେକ୍ଟରଙ୍କ ପ୍ରଧାନ ସହକାରୀ ହୋଇଛନ୍ତି । ଇଂରେଜ ସଂପୃକ୍ତି, ଅଧ୍ୟୟନ ଓ ଚିନ୍ତନ ତାଙ୍କ ବ୍ୟକ୍ତିତ୍ୱକୁ ନୂଆ ଆୟାମ ଦେଇଛି । ଆପଣା ଅନ୍ତର୍ଦୃଷ୍ଟିରେ ସେ ବ୍ରିଟିଶ୍ ପ୍ରଶାସନ ଓ ବ୍ୟାପାରିକ ବୁଦ୍ଧି; ପ୍ରାଚ୍ୟବିଦ୍ୟାବିତ୍ (ଉଇଲିୟମ୍ ଜୋନ୍‌ସ, କୋଲ୍‌ବ୍ରୁକ୍, ହାଲ୍‌ହେଡ୍ ଓ ମାର୍ଟିନ୍)ମାନଙ୍କ ସଂସ୍କୃତ ଭାଷାପ୍ରୀତି ଏବଂ ବେଦ, ଉପନିଷଦ, ସାହିତ୍ୟ, ଦର୍ଶନ ଓ ସଂସ୍କୃତି ଚର୍ଚ୍ଚା; ମିଶନାରୀ ପାଦ୍ରୀମାନଙ୍କର ଖ୍ରୀଷ୍ଟଧର୍ମ ପ୍ରଚାର ତରିକା ଓ ହିନ୍ଦୁ ବିଚାର, ବିଶ୍ୱାସ, ରୀତିନୀତି ପ୍ରତି ଆକ୍ରମଣାତ୍ମକ ଆଭିମୁଖ୍ୟ; ମୁଦ୍ରଣ କଳାର କାରନାମା, ଆଧୁନିକ ଶିକ୍ଷା ବ୍ୟବସ୍ଥା ଓ ଶିକ୍ଷାପ୍ରାପ୍ତମାନଙ୍କର ଆଚରଣ; ପଲ୍ଲୀ ମଣିଷମାନଙ୍କର ସହର ସଂପ୍ରୀତି ଏବଂ ଏକ ନବ-ଅଭିଜାତ ବର୍ଗର ଅଭ୍ୟୁଦୟ ଓ ସେମାନଙ୍କ ଜୀବନଚର୍ଯ୍ୟାକୁ ପରଖିଛନ୍ତି । ବ୍ରିଟିଶ୍ ପ୍ରତିଷ୍ଠିତ ଫୋର୍ଟ ଉଇଲିୟମ୍ କଲେଜ (୧୮୦୦) କଲିକତାର ନବ-ବୁଦ୍ଧିଜୀବୀ ସଂସ୍ଥାପିତ ହିନ୍ଦୁ କଲେଜ (୧୮୧୬, ଉଚ୍ଚଶିକ୍ଷା ପ୍ରସାରଣ ଉଦ୍ଦେଶ୍ୟରେ ଇଉରୋପୀୟ ଢାଞ୍ଚାରେ ଗଠିତ ଓ ପରବର୍ତ୍ତୀ କାଳରେ, ୧୮୫୫ରେ ପ୍ରେସିଡେନ୍‌ସି କଲେଜ ନାମରେ ନାମିତ ),ବେଦାନ୍ତ କଲେଜ (୧୮୨୫, ରାଜାରାମମୋହନ ରାୟ ପ୍ରତିଷ୍ଠିତ) ଏବଂ ଶିକ୍ଷାବିସ୍ତାର ଉଦ୍ଦେଶ୍ୟରେ ଗଠିତ ସ୍କୁଲ୍ ବୁକ୍ ସୋସାଇଟି (୧୮୧୮)ର କାର୍ଯ୍ୟାବଳୀକୁ ନିକଟରୁ ଦେଖିଛନ୍ତି । ଭାରତୀୟ ଅଧ୍ୟାତ୍ମର ଏକେଶ୍ୱରବାଦର ଆଧୁନିକ ପ୍ରବକ୍ତା ରାମମୋହନ ରାୟଙ୍କ ବ୍ରାହ୍ମ ସଂଗୋଷ୍ଠୀରେ ଯୋଗ ଦେଇଛନ୍ତି । ରାୟ ପ୍ରତିଷ୍ଠିତ ଭାରତୀୟ ଭାଷାର ପ୍ରଥମ ସଂବାଦପତ୍ର ସଂବାଦ କୌମୁଦୀର ସଂପାଦନା ଦାୟିତ୍ୱ (୧୮୨୧) ନେଇଛନ୍ତି । ମାତ୍ର ଉଭୟଙ୍କ ମଧ୍ୟରେ ଭାରତୀୟ ସାଂସ୍କୃତିକ ମୂଲ୍ୟବୋଧ ଓ ସାମାଜିକ ରୀତିନୀତିକୁ କେନ୍ଦ୍ରକରି ମତାନ୍ତର ସୃଷ୍ଟି ହୋଇଛି । ମତାନ୍ତର, ମନାନ୍ତରରେ ରୂପାନ୍ତରିତ ହୋଇଛି । ରାୟଙ୍କ କାର୍ଯ୍ୟପନ୍ଥା, ସର୍ବଧର୍ମ-ସମନ୍ୱୟ ବିଚାର-ସଂଭୂତ ବ୍ରାହ୍ମଦର୍ଶନ ଓ ସମାଜ-ଶୋଧନାଭିମୁଖ୍ୟ ତାଙ୍କୁ ଆହତ କରିଛି । କେବଳ ରାମମୋହନ ନୁହଁନ୍ତି, ହିନ୍ଦୁ କଲେଜର ଅଧ୍ୟାପକ ଓ ଅଧ୍ୟାୟୀମାନଙ୍କ ବିଚାର ଓ ଆଚରଣ (ବ୍ରାହ୍ମଣ୍ୟବାଦ, ଜାତିଭେଦ ପ୍ରଥା ଓ ସାମାଜିକ ଆଚାର ବିରୋଧୀ ମାନସିକତା; ବେଶ

ପୋଷାକ ଓ ଖାଦ୍ୟପେୟରେ ପଶ୍ଚିମପ୍ରୀତି ଓ ଦେଶୀ ମଣିଷମାନଙ୍କ ପ୍ରତି ଉନ୍ନାଶିକ ମନୋଭାବ) ତାଙ୍କୁ ଏତେ ମାତ୍ରାରେ ବ୍ୟଥିତ କରିଛି ଯେ, ଏହାର ପ୍ରତିବାଦରେ କଲିକତାରେ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ଗଢ଼ିଛନ୍ତି, ନାଁ ରଖିଛନ୍ତି 'ଧର୍ମସଭା' (୧୮୩୦) । ନିଜେ ସଭାପତି ଓ ରାଧାକାନ୍ତ ଦେବ (ପ୍ରଥମେ ହିନ୍ଦୁକଲେଜ ପ୍ରତିଷ୍ଠାର ଅନ୍ୟତମ ଉଦ୍‌ଯୋଗୀ ଓ ରାମମୋହନଙ୍କ ସହଯୋଗୀ) ଅନୁଷ୍ଠାନର ସଂପାଦକ ରହିଛନ୍ତି । ତାଙ୍କ ବିଚାରର ଅନ୍ୟ ସହଯୋଗୀମାନଙ୍କ ମଧ୍ୟରେ ରହିଛନ୍ତି ରାମଚନ୍ଦ୍ର ବିଦ୍ୟାବାଗୀଶ, ରାମରାମ ବସୁ, ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ଓ ରସୁମୟ ଦତ୍ତ ପ୍ରମୁଖ ।

ସମକାଳୀନ ବଙ୍ଗଳାର ନବଶିକ୍ଷିତ, ଧନୀ ଓ ପ୍ରଭାବଶାଳୀ ଗୋଷ୍ଠୀ ତାଙ୍କୁ ରଢ଼ିବାଦୀ, ପରଂପରାବାଦୀ ନାମରେ ଚିତ୍ରଣ କରିଛନ୍ତି । ମାତ୍ର ବାସ୍ତବତଃ, ସେମାନେ ପରଂପରାବାଦୀ ନଥିଲେ । ସେମାନେ ଅନ୍ୟ ବହୁତଙ୍କ ପରି ପଶ୍ଚିମର ଭାବାଦର୍ଶ ଆଧାରରେ ନୁହେଁ, ଆପଣା ସାଂସ୍କୃତିକ ମୂଲ୍ୟବୋଧର ଭୂମିରେ ସାମାଜିକ ଓ ସାଂସ୍କୃତିକ ଜୀବନରେ ପରିବର୍ତ୍ତନ ଅବଶ୍ୟ ପ୍ରେୟ ବୋଲି କହିଛନ୍ତି । ତେଣୁ ବଙ୍ଗ ଭୂମିରେ ଏହି ଦୁଇ ଶିବିର ମଧ୍ୟରେ ସୃଷ୍ଟ ବିତର୍କକୁ ଉଦାରତାବାଦ ଓ ପରଂପରାବାଦ ପରିବର୍ତ୍ତେ; ପୂର୍ବ ଓ ପଶ୍ଚିମ, ପରଂପରା ଓ ଆଧୁନିକତା ମଧ୍ୟରେ କହିବା ଅଧିକ ସମୀଚୀନ । ଏହି ବିଚାରର ବାସ୍ତବ ନେତୃତ୍ୱ ନେଇଛନ୍ତି ଭବାନୀ ଚରଣ ଓ ମୃତ୍ୟୁଞ୍ଜୟ । ଭବାନୀ ଆପଣା ସଂଗୋଷ୍ଠୀର ବିଚାର ପ୍ରତିଷ୍ଠା ଉଦ୍ଦେଶ୍ୟରେ ସମାଚାର ଚନ୍ଦ୍ରିକା ଯନ୍ତ୍ରାଳୟ ପ୍ରତିଷ୍ଠା କରିଛନ୍ତି ଏବଂ ସମାଚାର ଚନ୍ଦ୍ରିକା ନାମରେ ଏକ ସମ୍ବାଦ-ସାହିତ୍ୟପତ୍ର (୧୮୨୩) ମଧ୍ୟ ପ୍ରକାଶ କରିଛନ୍ତି । ତାଙ୍କ ବିଚାରର ଅଭିବ୍ୟକ୍ତି- ବାବୁର୍ ଉପାଖ୍ୟାନ (୧୮୨୧), କଲିକତା କମଲାଳୟ (୧୮୨୩), ଦୂତୀ ବିଲାସ (୧୮୨୫), ହିତୋପଦେଶ (୧୮୨୩), ନବବାବୁ ବିଲାସ(୧୮୨୫; ଲିଖନ ଶୈଳୀ ଦୃଷ୍ଟିରୁ ବଙ୍ଗଳାରେ ଏହାକୁ ଚରିତ, ନକ୍‌ସା, ବର୍ଣ୍ଣନାତ୍ମକ ଗଦ୍ୟ, ଏପରିକି କାହାଣୀ ପର୍ଯ୍ୟାୟର କୁହାଯାଇଛି । ଗଦ୍ୟର ମଝିରେ ମଝିରେ କବିତା ବି ରହିଛି ।), ନବ ବିବିର୍ ବିଲାସ୍ (୧୮୩୧) ଆଦି ମୌଳିକ ରଚନା ଏବଂ ଶ୍ରୀମଦ୍‌ଭାଗବତ, ମନୁ ସଂହିତା ଓ ଗୀତା ଆଦି ଅନୁବାଦ ଗ୍ରନ୍ଥ ।

ଭବାନୀଚରଣଙ୍କ ମୌଳିକ ରଚନାଗୁଡ଼ିକ ସମକାଳୀନ ବଙ୍ଗଳାର ପରିବର୍ତ୍ତିତ ସମାଜ ବ୍ୟବସ୍ଥାର ସୂକ୍ଷ୍ମ ଅନୁଶୀଳନ । ନୂଆ କରି ଜନ୍ମ ନେଉଥିବା ସହର ଓ ଗାଁରୁ ଆସୁଥିବା ନବସହରଜୀବୀମାନଙ୍କୁ ସେ ତୀବ୍ର ସମାଲୋଚନା କରିଛନ୍ତି । ବଙ୍ଗ ଭାଷାରେ ନଗରବାସୀ, ପଲ୍ଲୀ ଗ୍ରାମବାସୀ, ଭଦ୍ରଲୋକ, ବାବୁଗିରି ଆଦି ଶବ୍ଦ ତାଙ୍କରି ସଂରଚନା । ତାଙ୍କ ବିଚାରରେ 'କଲିକତା ଭାଗ୍ୟଦେବୀଙ୍କ ଆବାସ ସ୍ଥଳ', 'ଧନର ସୁଗଭୀର ସାଗର' । ଧନ ଅର୍ଜନ ଓ ଭାଗ୍ୟ ପରିବର୍ତ୍ତନପାଇଁ ସହର ପଲ୍ଲୀବାସୀମାନଙ୍କୁ ପ୍ରଲୁବ୍ଧ କରିଛି । ସେମାନେ ଆସିଛନ୍ତି । ଇଂରେଜମାନଙ୍କ ନିକଟତମ ହୋଇଛନ୍ତି । ଧନ ଅର୍ଜିଛନ୍ତି । ସଞ୍ଚିଛନ୍ତି । ଏବଂ, ଉପାର୍ଜନକୁ

ଭୂସମ୍ପତ୍ତିରେ ରୂପାନ୍ତରିତ କରିଛନ୍ତି । ଭଦ୍ରଲୋକ ହୋଇଛନ୍ତି । ଜମିଦାର ବି ହୋଇଛନ୍ତି । ଏହି ନବମାନେ ମଣିଷମାନଙ୍କୁ ଭଲ ପାଆନ୍ତି ନାହିଁ । ଦାନ କରନ୍ତି ନାହିଁ । ବିଳାସବ୍ୟସନ, ମଦ ଓ ବାରାଙ୍ଗନା ପ୍ରୀତିରେ ଜୀବନ ବଞ୍ଚିଛନ୍ତି । ମାତ୍ର ମାନବବାଦୀ ଓ ଦାନୀର ସମ୍ମାନ ପାଆନ୍ତି । ବହି କିଣନ୍ତି, ଘରକୁ ବହିରେ ସଜାନ୍ତି । ବହି ପଢ଼ନ୍ତି ନାହିଁ; ମାତ୍ର ବିଦ୍ୟାବନ୍ତ ବୋଲାନ୍ତି । ସେମାନେ ଇମିତି ଏକ ଗୋଷ୍ଠୀ, ଯେଉଁମାନେ ନା ପଶ୍ଚିମର, ନା ପୂର୍ବର; ବରଂ ଏହି ଦୁଇ ସମୁଦାୟର ଏକ ବିଚିତ୍ର ସମବାୟ, ସଙ୍କର । ସେମାନେ ସହରୀ, ଶିକ୍ଷିତ ଓ ସଂଭ୍ରାନ୍ତ । କ୍ଷମତା ଓ ଅର୍ଥ ସେମାନଙ୍କ ବ୍ୟକ୍ତିତ୍ୱ ଓ ଜାତିର ଚିହ୍ନକ । ତେଣୁ କୁହାଯାଏ, ଆପଣା ସମୁଦାୟର ସମାଜତାତ୍ତ୍ୱିକ ବ୍ୟାଖ୍ୟାୟନରେ ଭବାନୀଚରଣ ଭାରତବର୍ଷର ପ୍ରଥମ ବ୍ୟକ୍ତିତ୍ୱ ଏବଂ ଯୁକ୍ତିନିଷ୍ଠ, ବ୍ୟଙ୍ଗାତ୍ମକ, ବ୍ୟାଖ୍ୟା ଓ ବର୍ଣ୍ଣନାଧର୍ମୀ ଗଦ୍ୟଶୈଳୀର ପ୍ରବର୍ତ୍ତକ । ସାମ୍ପ୍ରାଦିକତା କ୍ଷେତ୍ରରେ ମଧ୍ୟ ତଥ୍ୟ ଓ ସତ୍ୟନିଷ୍ଠ ।

ଭ୍ରମଣଶୀଳତା ଭବାନୀଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ବିଶେଷତ୍ୱ । ସେ ଭାରତର ବିଭିନ୍ନ ଅଞ୍ଚଳକୁ ଯାଇଛନ୍ତି । ଓଡ଼ିଶା ମଧ୍ୟ ତାଙ୍କ ପରିବ୍ରାଜକୀୟ ଚର୍ଯ୍ୟାର ଅନ୍ୟତମ ଭୂମି ହୋଇଛି । ପୁରୀ, ଭୁବନେଶ୍ୱର, ଯାଜପୁର ଓ କୋଣାର୍କ ଆଦି ସ୍ଥାନରେ ପାଦ ଦେଇଛନ୍ତି । ଏହି ସ୍ଥାନଗୁଡ଼ିକ ତାଙ୍କପାଇଁ ସାଧାରଣ ନୁହେଁ; ତୀର୍ଥକ୍ଷେତ୍ର, କଳା ଓ ସଂସ୍କୃତି କ୍ଷେତ୍ର । ସେହି ନ୍ୟାୟରେ ଏହି କ୍ଷେତ୍ର ଓ କ୍ଷେତ୍ରଗୁଡ଼ିକର ସର୍ଜନାକାରୀମାନେ ମଧ୍ୟ ସ୍ୱତନ୍ତ୍ର । ତେଣୁ, ସ୍ୱଭାବତଃ, ଜଣେ ଧର୍ମବିଶ୍ୱାସୀ ଓ ପରଂପରାପ୍ରେମୀ ରୂପରେ ସେ ଓଡ଼ିଶାର ଏହି ସଂସ୍କୃତି-ପୀଠଗୁଡ଼ିକର ଇତିହାସ ଖୋଜିଛନ୍ତି । ମାଦଳାପାଞ୍ଜି ହାତରେ ପଡ଼ିଛି ଏବଂ ଏହି ପାଞ୍ଜି ଓ ଅନୁଭବକୁ ଆଧାରକରି ଜୀବନର ପରିଣତ ବୟସରେ, ମୃତ୍ୟୁ(୧୮୪୮)ର ଅଳ୍ପ କେତେ ବର୍ଷ (ପ୍ରାୟ ଚାରି ବର୍ଷ) ପୂର୍ବରୁ ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା ଲେଖିଛନ୍ତି । ଆପଣା ଯନ୍ତ୍ରାଳୟରେ ଛାପିଛନ୍ତି । ବହି ଖଣ୍ଡିକ ସତେଯେପରି ଉତ୍କଳଯାତ୍ରୀ ବଙ୍ଗୀୟମାନଙ୍କ ପାଇଁ ମାର୍ଗଦର୍ଶିକା ବା ଗାଇଡ୍ ବୁକ୍ ହୋଇଛି । ତେଣୁ ବହି ପଢ଼ିଲେ ଏହା ଇତିହାସ ଓ ଅଧ୍ୟାତ୍ମ ଚେତନାର ଏକ ସମବାୟ ବୋଲି ଯେ କୌଣସି ପାଠକ ଅବଶ୍ୟ ସ୍ୱୀକାର କରିବ ।

## ତିନି

ଭବାନୀ ଚରଣଙ୍କ ବହିର ନାଁ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସେ ଏହାର ନାଁ ଓଡ଼ିଶା ଇତିହାସ କି ନିଜେ ଏହାର ଲେଖକ ବୋଲି କହିନାହାନ୍ତି । ଲେଖିଛନ୍ତି 'ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା ଅର୍ଥାତ୍ ଶ୍ରୀକ୍ଷେତ୍ରଧାମର ବିବରନ' । କହିବାକୁ ଗଲେ- ସେ ଓଡ଼ିଶା ନୁହେଁ, ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପ୍ରସଙ୍ଗହିଁ ଲେଖିଛନ୍ତି । ଏବଂ, ଏହି ଲେଖା ତାଙ୍କର ନୁହେଁ, ତାଙ୍କଦ୍ୱାରା ସଂଗୃହୀତ । ଆମସ୍ ସଟନ ମଧ୍ୟ ୧୮୪୦ ମସିହାରେ ଲେଖିଥିବା ନିଜ ଓଡ଼ିଶ୍ୟା ଇତିହାସ ବହିରେ 'ସଂଗ୍ରହ' ଶବ୍ଦ ପ୍ରୟୋଗ କରିଛନ୍ତି । ଏହା ସମକାଳୀନ ଧାରଣା ଥିଲା ଯେ, ଇତିହାସ ଏକ ସୃଜନକର୍ମ ନୁହେଁ, ସଂଗୃହୀତ ତଥ୍ୟର ଅକ୍ଷରାୟନ । ସେହି ନ୍ୟାୟରେ, ଭବାନୀଚରଣ

ଶ୍ରୀକ୍ଷେତ୍ର ସଂପର୍କରେ ଆପଣା ସଂଗୃହୀତ ତଥ୍ୟକୁ ନିଜ ଭାଷାରେ ଲେଖିଛନ୍ତି । ପଲ୍ଲବନ କି ଅତିକଥନ ସାହସୀ ହୋଇନାହାନ୍ତି । ଅତିକଥନ ସହଜେ ତ ଅପରାଧ, ତାହା ପୁଣି ଶ୍ରୀକ୍ଷେତ୍ର ନାମକ ପବିତ୍ର କ୍ଷେତ୍ର ଓ ଜଗନ୍ନାଥ ବିଶ୍ୱାସର ଅତିରଞ୍ଜନ। ତେବେ ଏଥିରେ ପୁରୁଷୋତ୍ତମଙ୍କ କଥା କହୁ କହୁ ଓଡ଼ିଶାର କଥା କହି ହୋଇଯାଇଛି । କାରଣ ଓଡ଼ିଶାର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଇତିହାସ ସହିତ ଜଗନ୍ନାଥ ଓ ତାଙ୍କ କ୍ଷେତ୍ରର ଇତିହାସ ଅଙ୍ଗାଙ୍ଗୀ ଜଡ଼ିତ । ଧର୍ମବିଶ୍ୱାସ ସହିତ କୌଣସି ଜନସମୁଦାୟର ରାଜନୀତି/ ପ୍ରଶାସନ କିପରି ଓତପ୍ରୋତଃ ସମ୍ବନ୍ଧିତ, ଅର୍ଥାତ୍ ଧର୍ମବିଶ୍ୱାସର ଚତୁର ଚାଳନାରେ କ୍ଷମତା କିପରି ନିଜର ସ୍ଥିତିକୁ ଦୃଢ଼ କରେ ଏବଂ ଧର୍ମ ବିଶ୍ୱାସ କିପରି କ୍ଷମତା ଚିରାୟୁତୀକରଣର ମାଧ୍ୟମ ହୋଇପାରେ, ଏହି ବହି ତାହାର ଏକ ଚମତ୍କାର ଉଦାହରଣ ।

## ଚାରି

ଭବାନୀ ଚରଣଙ୍କ ଏହି ବହି, କୌଣସି ଭାରତୀୟଙ୍କ ଦ୍ୱାରା ଲିଖିତ ଓଡ଼ିଶାର ପ୍ରଥମ ଇତିହାସ ବହି । ତାଙ୍କ ପୂର୍ବରୁ Andrew Sterling- An Account: Geographical, Statistical and Historical of Orissa (1825), ପାଦ୍ରୀ ଆମସ୍ ସଟନ୍, ଦୁଇଗୋଟି ଭାଗରେ ପ୍ରକାଶିତ 'ଓଡ଼ିଶାର ସାରସଂଗ୍ରହ ଅଥଃ ଓଡ଼ିଶା ଆଦି ବିବରଣ ସଂକ୍ଷେପ' ନାମକ ବହିରେ ଓଡ଼ିଶାର ଇତିହାସ ଲେଖିଛନ୍ତି । ସଟନ୍ଙ୍କ ବହି ସମକାଳରେ ଓଡ଼ିଶାର ସ୍କୁଲ ସମୂହରେ ପାଠ୍ୟପୁସ୍ତକର ଆବଶ୍ୟକତା ପୂରଣକରିଛି । ପରବର୍ତ୍ତୀ କାଳରେ ଅନ୍ୟ ଦୁଇଜଣ ବଙ୍ଗାଳୀ, ଶ୍ରୀ ରଂଗଲାଲ୍ ବାନାର୍ଜୀ (ସୁପରିଚିତ ପୁରାତତ୍ତ୍ୱବିତ୍) ଉତ୍କଳବର୍ଣ୍ଣନ (୧୮୬୪) ଏବଂ ବାବୁ ଶିବଚନ୍ଦ୍ର ସୋମ 'ଓଡ଼ିଶ୍ୟାର ଇତିହାସ' (୧୮୬୭) ଶୀର୍ଷକରେ ଓଡ଼ିଶାର ଇତିହାସ ଲେଖିଛନ୍ତି । ଏହି ଦୁଇଖଣ୍ଡ ମଧ୍ୟ ବଂଗଳା ଭାଷାରେ ଲିଖିତ । ସୋମ୍ଙ୍କ ବହି ନଅଗୋଟି ଅଧ୍ୟାୟରେ ବିଭକ୍ତ, ପୃଷ୍ଠାସଂଖ୍ୟା ୧୪୯ । ଏହା ମଧ୍ୟ ସ୍କୁଲର ପଢ଼ା ବହି ହୋଇଛି । ମାତ୍ର ଶିବଚନ୍ଦ୍ର ତାଙ୍କ ବହିର ମୁଖବନ୍ଧରେ, ବଙ୍ଗଳାରେ ଓଡ଼ିଶାର ଇତିହାସ ରଚନାରେ ସେ ପଥିକୃତ ବ୍ୟକ୍ତିତ୍ୱ ବୋଲି ଦାବି କରିଛନ୍ତି । ସମ୍ଭବତଃ, ଭବାନୀ ଚରଣଙ୍କ ବହି ତାଙ୍କ ଆଖିରେ ପଡିନାହିଁ, କିମ୍ବା ବହିର ଇତିହାସ ଭାଗ କବିତାରେ ଲେଖାଯାଇଥିବାରୁ ସେ ଏହାର ପାଠ୍ୟ ପୁସ୍ତକ ଉପଯୋଗିତାକୁ ସ୍ୱୀକାର କରିପାରିନାହାନ୍ତି । ଭବାନୀ ଶଙ୍କରଙ୍କ ପରେ ପରେ ବାବୁ ବ୍ରଜକିଶୋର ଘୋଷ A History of Puri.. with An Account of Jagannath ବହି ୧୮୪୮ ମସିହାରେ ପ୍ରକାଶ କରିଛନ୍ତି । ଏବଂ, ସମକାଳରେ ଡବ୍ଲ୍ୟୁ. ଏଫ୍. ବି. ଲରି ଏବଂ ଆମ୍ସ ସଟନ୍ଙ୍କ ଦୁଇଖଣ୍ଡ ଇତିହାସ ଗ୍ରନ୍ଥ , ଯଥାକ୍ରମେ- Orissa, the Garden of Superstition and Idolatry: Including An Account of British Connection with the Temple of Jagannath (1850) ଏବଂ Orissa, Its Evangelization (1850) ନାମରେ ପ୍ରକାଶପାଇଛି । ପ୍ରକାଶ ଥାଉ କି, ପ୍ରତ୍ୟେକ ଲେଖକ ଓଡ଼ିଶା ଇତିହାସର ନିର୍ଭରଯୋଗ୍ୟ ଉପାଦାନ ଭାବରେ ମାଦଳାପାଞ୍ଜିକୁ ଗ୍ରହଣ କରିଛନ୍ତି ।

ଏହି ଇତିହାସ ବହିଗୁଡ଼ିକ ପଢ଼ିଲାବେଳେ ଗୋଟିଏ କଥା ସ୍ପଷ୍ଟ ହୋଇଯାଏ ଯେ, ଇଂରେଜ୍‌ମାନେ ଭାଷା ଓ ଅଞ୍ଚଳ ଭେଦରେ ବହୁଧା ବିଭକ୍ତ ଭାରତୀୟ ଜନସମୁଦାୟଙ୍କୁ ସେମାନଙ୍କ ଇତିହାସ ସଂପର୍କରେ ଅବହିତ କରିବାପାଇଁ ଉଦ୍ୟମ କରିଛନ୍ତି । ସୁଦୂର ପଛଦିନର ବର୍ଣ୍ଣନା ମାଧ୍ୟମରେ ସେମାନଙ୍କ ମଧ୍ୟରେ ଜୀବନ୍ତ ସଂସ୍କୃତି-ସୂତ୍ରକୁ ବହୁଖଣ୍ଡିତ କରିବା ସେମାନଙ୍କର ଆଭିମୁଖ୍ୟ ହୋଇଛି । ଅର୍ଥାତ୍ ଦେଶୀମାନଙ୍କୁ ପରସ୍ପର ମଧ୍ୟରେ ଝଗଡିବାପାଇଁ ଅନୁକୂଳ ପରିବେଶ ସୃଷ୍ଟି ମାଧ୍ୟମରେ, ଆପଣାର ସାମ୍ରାଜ୍ୟବାଦୀ ମାନସିକତାର ଚିରାୟୁତୀକରଣ ସେମାନଙ୍କର ଧର୍ମ ହୋଇଛି । ଫଳତଃ, ସେମାନେ ବିଭିନ୍ନ ରାଜବଂଶର ସୃଷ୍ଟି, ରାଜ୍ୟର ସୀମା ପ୍ରସାରଣପାଇଁ ଅଧିପତିମାନଙ୍କର ଆକ୍ରମଣାତ୍ମକ ଆଭିମୁଖ୍ୟ ଓ ବିଶାଳ ସାମ୍ରାଜ୍ୟ ଗଠନ ଅର୍ଥାତ୍ ରାଜନୀତିକ ବିବରଣୀ ସହିତ ଭାଷା, ସାହିତ୍ୟ, ଧର୍ମ, ସାମାଜିକ ରୀତିନୀତି, କଳା ଓ ସଙ୍ଗୀତର ମଧ୍ୟ ଚର୍ଚ୍ଚା କରିଛନ୍ତି । ଦେଶୀମାନଙ୍କପାଇଁ ଇତିହାସ ବହି ଦର୍ପଣ ହୋଇଛି । ପ୍ରାଥମିକ କାଳରେ କିମ୍ବଦନ୍ତୀ, ମହାକାବ୍ୟ ଓ ପୁରାଣ ବହିର ପ୍ରଧାନ ଉପାଦାନ ହୋଇଛି । ଫଳତଃ, ବହିଗୁଡିକ ସତ୍ୟ ଅପେକ୍ଷା କଳ୍ପନାର ଅକ୍ଷରାୟଣ ପରି ବୋଧହୋଇଛନ୍ତି । ଏଗୁଡ଼ିକ ବିଦ୍ୟାଳୟରେ ପଢ଼ାବହିର ମାନ୍ୟତା ପାଇଛନ୍ତି । ନୂଆ ପିଢ଼ିର ମଣିଷମାନଙ୍କୁ, ନିଜର ସମଗ୍ରକୁ ଭିନ୍ନ ରୂପରେ ଆକଳନପାଇଁ ସୁଯୋଗ ସୃଷ୍ଟି କରାଯାଇଛି ।

ଏଠାରେ, ଇଂରେଜ୍ ଭିନ୍ନ, ବଙ୍ଗାଳୀମାନେ ବଙ୍ଗଳାଭାଷାରେ ଓଡ଼ିଶାର ଇତିହାସ ଲେଖିବା ସଂପର୍କରେ ପ୍ରଶ୍ନ ଉଠିପାରେ । ପ୍ରକାଶ ଥାଉକି, ବ୍ରିଟିଶ୍ ଉପନିବେଶବାଦ-ଭୂତାଣୁ-ସଂକ୍ରମିତ-ବଙ୍ଗାଳୀମାନେ, ଆପଣାର ପଡୋଶୀମାନଙ୍କ ଉପରେ ଆଧିପତ୍ୟ ବିସ୍ତାର ପ୍ରୟାସୀ ହୋଇଛନ୍ତି । ସେମାନେ ନିଜ ଅବଶିଷ୍ଟମାନଙ୍କଠାରୁ ଭାଷା, ସାହିତ୍ୟ ଓ ସଂସ୍କୃତି ଆଦି ସକଳ କ୍ଷେତ୍ରରେ ଯେ ବିକଶିତ ଓ ସମ୍ଭ୍ରାନ୍ତ, ଏହା ପ୍ରମାଣପାଇଁ ଔପନିବେଶିକ ମାନସିକତାକୁ ଶ୍ରେୟ କରିଛନ୍ତି । ଫଳତଃ, ବ୍ରିଟିଶ୍ ଉପନିବେଶ ଭିତରେ ଓଡ଼ିଶାକୁ ବଙ୍ଗାଳୀମାନେ ଆପଣାର ଉପନିବେଶ ଜ୍ଞାନ କରିଛନ୍ତି । ଉପନିବେଶ ଭିତରେ ଓଡ଼ିଶା ଆଉ ଏକ ଉପନିବେଶ । ଏବଂ, ଆପଣା ଭାଷା ଓ ସାହିତ୍ୟ ମାଧ୍ୟମରେ ଓଡ଼ିଶାର ଅସ୍ମିତାକୁ କବଳିତ କରିବା ବଙ୍ଗାଳୀମାନଙ୍କର ଧର୍ମ ହୋଇଛି । ସେମାନେ ଓଡ଼ିଶାରେ ଜମିଦାରିଗୁଡ଼ିକୁ କିଣିଛନ୍ତି, ଅର୍ଥାତ୍ ଓଡ଼ିଆମାନଙ୍କର ସାମନ୍ତ ହୋଇଛନ୍ତି । ଏଣେ ବଞ୍ଚିବାପାଇଁ ସାଧନ ଖୋଜିଖୋଜି ଓଡ଼ିଆମାନେ ବାଣିଜ୍ୟ ଓ ଶାସନକେନ୍ଦ୍ର କଲିକତାକୁ ଯାଇଛନ୍ତି, କୁଲି ଓ ମୂଲିଆ କାମ କରିଛନ୍ତି । କଲିକତାକୁ ସେମାନେ ଆପଣା ଅପଣାର ଆଦର୍ଶ କରିଛନ୍ତି । ଏବଂ, ଓଡ଼ିଶାର ଶିକ୍ଷା, ପ୍ରଶାସନ, ବାଣିଜ୍ୟ କ୍ଷେତ୍ରକୁ ଅଧିକାର କରିଥିବା ବଙ୍ଗାଳୀମାନେ, ନିଜ ମସୁଧାକୁ ବ୍ୟବସ୍ଥିତ କରିବା ଉଦ୍ଦେଶ୍ୟରେ ତୃଣମୂଳ ସ୍ତରରୁ ଉଦ୍ୟମ ଆରମ୍ଭ କରିଦେଇଛନ୍ତି । ସେମାନେ ସ୍କୁଲଗୁଡ଼ିକୁ ଯାଇଛନ୍ତି । ସ୍କୁଲ କହିଲେ-ଏକ ଜନସମୁଦାୟର ଆଧୁନିକୀକରଣର ମଣଭୂମି । ସେଠାରେ ପଢ଼ାଯିବାପାଇଁ ଓଡ଼ିଆରେ ଅଳ୍ପ ସଂଖ୍ୟକ ବହି, ଏବଂ, ଅଧିକ ସଂଖ୍ୟକ ବହି ବଙ୍ଗଳା

ବହିର ଅନୁବାଦ ହୋଇଥିବାରୁ, ବଙ୍ଗଳା ଭାଷାରେ ଛାପା ବହି ଚଳାଇବାପାଇଁ ଉଦ୍ୟମ କରିଛନ୍ତି । ଏହି ବହିଗୁଡିକ ମାଧ୍ୟମରେ ସେମାନେ ପ୍ରମାଣକରିବାକୁ ଚାହିଁଛନ୍ତି ଯେ, ଓଡ଼ିଶାରେ ଦୃଶ୍ୟମାନ ଯାବତୀୟ ସମ୍ପଦ ( ଭାଷା, ସାହିତ୍ୟ, ସ୍ଥାପତ୍ୟ, ନୃତ୍ୟ, ଗୀତ ଓ ସଂସ୍କୃତି) ସବୁକିଛି ସେମାନଙ୍କ ପୂର୍ବପୁରୁଷମାନଙ୍କର ସଂରଚନା । ମାତ୍ର ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟ ଉପର୍ଯ୍ୟୁକ୍ତ ମାନସିକତାର ପ୍ରତୀକ ବୋଲି ସହଜରେ ସ୍ୱୀକାର କରିହୁଏ ନାହିଁ । ଏହି ବହି ସମକାଳର ବଙ୍ଗ- ଓଡ଼ିଶାର ମିତ୍ରତାକୁ ହିଁ ସୂଚାଏ ।

**ପାଞ୍ଚ**

ଏହି ବହି ତିନିଭାଗରେ ବିଭକ୍ତ । ପ୍ରଥମ ଭାଗଃ ଶ୍ରୀକ୍ଷେତ୍ର ବର୍ଣ୍ଣନାଠାରୁ ଶ୍ରୀମନ୍ଦିରର ଛତିଶନିଯୋଗ (ପଞ୍ଚତୀର୍ଥ ବିଧାନ, ଚକ୍ରତୀର୍ଥ, ଶ୍ରୀମୂର୍ତ୍ତିର ପ୍ରତିମୂର୍ତ୍ତି, ଇନ୍ଦ୍ରଦ୍ୟୁମ୍ନ ପ୍ରତି ବରଦାନ, ଦ୍ୱାଦଶ ଯାତ୍ରା ପ୍ରକରଣ, ଇନ୍ଦ୍ରଦ୍ୟୁମ୍ନ କଳ୍ପିତ ଭୋଗ, ସ୍ନାନଯାତ୍ରା ପ୍ରକରନ, ନବଯୌବନ ଦର୍ଶନ, ରଥଯାତ୍ରା ଓ ଛତିଶନିଯୋଗ); ଦ୍ୱିତୀୟ ଭାଗଃ କଳିଯୁଗଠାରୁ ଆରମ୍ଭ କରି ୪୯୪୫ବର୍ଷ ବ୍ୟାପୀ ଓଡ଼ିଶାର ରାଜତନ୍ତ୍ରର କାହାଣୀ । ଏଥିରେ ଯୁଧିଷ୍ଠିରଙ୍କଠାରୁ ଆରମ୍ଭ କରି ମୁକୁନ୍ଦଦେବଙ୍କ ପର୍ଯ୍ୟନ୍ତ ରାଜାମାନଙ୍କର ଦୀର୍ଘ ତାଲିକା ରହିଛି । ଏବଂ ତୃତୀୟ ଭାଗଃ ଓଡ଼ିଶାର ଅନ୍ୟ ତିନି ପ୍ରମୁଖ କ୍ଷେତ୍ର (ଚକ୍ରକ୍ଷେତ୍ର, ଗଦାକ୍ଷେତ୍ର ଓ ପଦ୍ମକ୍ଷେତ୍ର)ର ବର୍ଣ୍ଣନା । ଶ୍ରୀକ୍ଷେତ୍ର ବର୍ଣ୍ଣନା, ରାଜବଂଶାବଳୀ ଓ ରାଜ୍ୟଶାସନ ବିବରଣୀ ଏବଂ ତୀର୍ଥ ବର୍ଣ୍ଣନାପାଇଁ ଗ୍ରନ୍ଥକାର ଯଥାକ୍ରମେ ସ୍କନ୍ଦ ପୁରାଣ ବର୍ଣ୍ଣିତ ଉତ୍କଳଖଣ୍ଡ, ମାଦଳାପାଞ୍ଜି ଏବଂ କପିଳସଂହିତା, ବାୟୁ ଓ ଗରୁଡ ପୁରାଣକୁ ଆକର ଗ୍ରନ୍ଥ ରୂପରେ ଗ୍ରହଣ କରିଛନ୍ତି । ଗ୍ରନ୍ଥର ପ୍ରଥମ ଓ ତୃତୀୟଭାଗ, ସଂସ୍କୃତ ଆକର ଗ୍ରନ୍ଥଗୁଡିକର ବଙ୍ଗଳା ଅନୁବାଦ । ଏହି ଅଂଶ ଗୁଡିକୁ ପଢ଼ିଲାବେଳେ, ପାଠକ ଶ୍ରୀକ୍ଷେତ୍ର (ପୁରୀ), ଚକ୍ରକ୍ଷେତ୍ର (ଭୁବନେଶ୍ୱର), ଗଦାକ୍ଷେତ୍ର (ଯାଜପୁର) ଏବଂ ପଦ୍ମକ୍ଷେତ୍ର (କୋଣାର୍କ)ରେ ନିଜର ବର୍ତ୍ତମାନକୁ ଅନୁଭବ କରେ । ଦେଖେ, ସେ ଯାଜପୁରର ବିରଜାଦେବୀଙ୍କ ମନ୍ଦିର, ମନ୍ଦିର ପାଖ ଅନ୍ୟତୀର୍ଥରେ ପଣ୍ଡାମାନଙ୍କ ଆକ୍ରମଣ ଓ ପ୍ରେମ, ଉଭୟକୁ ସ୍ୱୀକାର କରୁଛି । କୋଣାର୍କ ପାଖରେ ଠିଆ ହୋଇ ଦେଖୁଛି, ଉତ୍କଳୀୟ ସ୍ଥାପତ୍ୟର ବିଭଙ୍ଗ ରୂପ । ଏ ସମସ୍ତ ଭବାନୀ ଚରଣଙ୍କ ପରିବ୍ରାଜକୀୟ ଅନୁଭବର ବିବରଣୀ । ବାସ୍ତବ ଇତିହାସ, କଳ୍ପନା ନୁହେଁ । ଏବଂ, ଓଡ଼ିଶାର ଧର୍ମ ପରମ୍ପରାକୁ ମଧ୍ୟ ସହଜରେ ବୁଝି ପାରୁଛି । ଏଥିପାଇଁ ଓଡ଼ିଶାର ରାଜନୀତିକ ଇତିହାସ (ବିବରଣୀ କୁହାଯାଇପାରେ) ମାଦଳାପାଞ୍ଜିକୁ ସେ ଉତ୍ସ ଭାବରେ ଗ୍ରହଣ କରିଛନ୍ତି ଏବଂ ବହିର ବିଭିନ୍ନ ସ୍ଥାନରେ ସ୍ୱୀକାର କରିଛନ୍ତି ।

ଷ୍ଟର୍ଲିଂଙ୍କଠାରୁ ଆରମ୍ଭକରି ଆଜି ପର୍ଯ୍ୟନ୍ତ ଓଡ଼ିଶାର ରାଜନୀତିକ, ସାଂସ୍କୃତିକ ଓ ସାମାଜିକ ଇତିହାସ ସଂରଚନାରେ ଗବେଷକମାନଙ୍କପାଇଁ ମାଦଳାପାଞ୍ଜି ଅନ୍ୟତମ ଆକର ଗ୍ରନ୍ଥ । ମାତ୍ର ଆଜି ମୂଳ ପାଞ୍ଜିର ରୂପ ଓ କାଳ ନିରୂପଣ ତଥାପି ବିତର୍କିତ

ପ୍ରସଙ୍ଗ । କୁହାଯାଏ- ଏକ ସମୟରେ ଜଣେ/ ଦୁଇଜଣ (ତଡ଼ଉକରଣ ଓ ଦେଉଳକରଣ)ଙ୍କଦ୍ୱାରା ଶାସନର ଇତିହାସ ଓ ଶ୍ରୀମନ୍ଦିରରେ ଜୀଉମାନଙ୍କର ରୀତିନୀତିର ବିବରଣୀ ଲେଖା ଯାଉଥିଲା । କାଳକ୍ରମେ ଲିଖନକାରଙ୍କ ପରିବାର ଭାଗଭାଗ ହୋଇଛି । ଫଳତଃ ,ପାଞ୍ଜି ପାରିବାରିକ ସଂପତ୍ତି ହୋଇ ଥିବାରୁ ତାହାର ପ୍ରତିଲିପି ପ୍ରସ୍ତୁତ ହୋଇଛି ଓ ଭାଇବିରାଦରମାନେ ସେଗୁଡ଼ିକୁ ବାଣ୍ଟି ନେଇଛନ୍ତି । ପ୍ରତିଲିପୀକରଣ, ପ୍ରକ୍ଷିପ୍ତାୟନର କାରଣ ହୋଇଛି । ଏବଂ, ପରବର୍ତ୍ତୀ କାଳରେ, ଊନବିଂଶ ଶତାବ୍ଦୀରେ ଓଡ଼ିଶାର ଇତିହାସ ରଚନା କାର୍ଯ୍ୟରେ ହାତ ଦେଇଥିବା ବଙ୍ଗାଳୀ (ଭବାନୀ ଚରଣ, ବ୍ରଜକିଶୋର, ରଙ୍ଗଲାଲ୍, ଶିବଚନ୍ଦ୍ର ଓ ରାଜେନ୍ଦ୍ର ଲାଲ୍) ପାଦ୍ରୀ (ସଟନ୍ ଓ ଲରୀ), ଇଂରେଜ ପ୍ରଶାସକ (ଷ୍ଟର୍ଲିଂ, ହଣ୍ଟର, ଟଏନବି)ମାନେ ନିଜ ନିଜର କ୍ଷମତା, ଅର୍ଥ ଓ ବୁଦ୍ଧିକୁ ମାଧ୍ୟମ କରି ପାଞ୍ଜିର ପ୍ରତିଲିପିମାନ ହାତ କରିନେଇଛନ୍ତି । ପାଞ୍ଜି ସହିତ ଜଡ଼ିତ ଧର୍ମବିଶ୍ୱାସ ଓ ଅଧିକାର ମୂଲ୍ୟହୀନ ପ୍ରମାଣିତ ହୋଇଛି । ପାଞ୍ଜିର ପ୍ରଥମ ଓଡ଼ିଆ ବ୍ୟବହାରକାରୀ ପ୍ୟାରୀମୋହନ ଆଚାର୍ଯ୍ୟ । 'ଓଡ଼ିଶାର ଇତିହାସ 'ବହି ରଚନାରେ ସେ ଏହାର ସାହାଯ୍ୟ ନେଇଛନ୍ତି । ମାତ୍ର ପାଞ୍ଜିର ପ୍ରଥମ ବ୍ୟାଖ୍ୟାକାର ଜଗବନ୍ଧୁ ସିଂହ । ଏହା ତାଙ୍କ 'ଉତ୍କଳ ରାଜବଂଶାବଳୀ' ଶୀର୍ଷକ ଆଲୋଚନା ପ୍ରସ୍ତୁତି (ଏହା ପ୍ରଥମେ 'ମୁକୁର' ପତ୍ରିକାରେ ୧୯୧୭ ମସିହାଠାରୁ ଧାରାବାହିକ ଭାବରେ ବିଭିନ୍ନ ସଂଖ୍ୟାରେ ଓ ପରେ 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ ସଂଯୋଜିତ) ର ମୂଳ ଉପାଦାନ । ପାଞ୍ଜି ଯଥାର୍ଥତଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଂପାଦନାରେ ଗ୍ରନ୍ଥାକାରରେ ୧୯୪୦ ମସିହାରେ ପ୍ରକାଶପାଇଛି । ଏବଂ, ଶୁଦ୍ଧପାଠ ନିର୍ଣ୍ଣୟପାଇଁ ସେ ତିନିଗୋଟି ପାଞ୍ଜିର ସାହାଯ୍ୟ ନେଇଛନ୍ତି । ମାତ୍ର ଏହି କ୍ଷେତ୍ରରେ ଦୁଇଜଣ ସ୍ମରଣୀୟ ଗବେଷକ ମନମୋହନ ଚକ୍ରବର୍ତ୍ତୀ ଓ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ । ଚକ୍ରବର୍ତ୍ତୀ ପ୍ରଥମେ ପାଞ୍ଜିର ଐତିହାସିକତାକୁ ପ୍ରଶ୍ନ କରିଥିଲା ବେଳେ, ପରେ ପାଣିଗ୍ରାହୀ ତାହାର ଯଥାର୍ଥ ଅନୁଶୀଳନ କରିଛନ୍ତି । ପାଞ୍ଜିର ଜନ୍ମକାଳ ଓ ବିଭିନ୍ନ ରାଜବଂଶାବଳୀ ସଂକ୍ରାନ୍ତ ବର୍ଣ୍ଣନାରେ ଥିବା ଭ୍ରାନ୍ତିର ଉଦ୍‌ଘାଟନ ଏବଂ ଏଥି ସହିତ ଏହାର ଉପାଦେୟତା ସଂପର୍କରେ ସେ ବୈଜ୍ଞାନିକ ଚର୍ଚ୍ଚାଭୂମି ପ୍ରସ୍ତୁତ କରିଛନ୍ତି ।

ପାଞ୍ଜି ସଂପର୍କରେ ମୁଁ ଏହି ସଂକ୍ଷିପ୍ତ ବିବରଣୀ ଦେବାର କାରଣ, ଏହା ଇତିହାସତତ୍ତ୍ୱ ଆଧାରରେ ଇତିହାସ ଗ୍ରନ୍ଥ ନୁହେଁ । ମାତ୍ର, ଇତିହାସ ଗଢ଼ଣ ଉପାଦାନରେ ପୂର୍ଣ୍ଣଗଭା । ପ୍ରତ୍ୟେକ ଐତିହାସିକ, ତେଣୁ, ଆପଣା ଆପଣା ଆବଶ୍ୟକତା ଓ ଭାବାଦର୍ଶକୁ ରୂପଦେବାପାଇଁ ଏହାକୁ ବ୍ୟବହାର କରିଛନ୍ତି । ପାଞ୍ଜିରେ ପ୍ରଦତ୍ତ ତଥ୍ୟର ସତ୍ୟତା ନିରୂପଣ ଗବେଷଣାର ବିଷୟ । ମାତ୍ର ଏଠାରେ ପ୍ରସଙ୍ଗକ୍ରମେ ମୁଁ ସ୍ପଷ୍ଟ କରିଦେବାକୁ ଉଚିତ ମଣୁଛି ଯେ, ଏହାର ପ୍ରାୟ ପ୍ରତ୍ୟେକ ପ୍ରତିଲିପିରେ କେତେକ ନିର୍ଦ୍ଦିଷ୍ଟ ଘଟଣା ଓ ପ୍ରସଙ୍ଗରେ ତଥ୍ୟ ଓ ବର୍ଣ୍ଣନାଗତ ବିବିଧତା ରହିଛି । ଓଡ଼ିଶାର ଇତିହାସ ବହିଗୁଡ଼ିକ

ଏହାର ପ୍ରମାଣ । ଭବାନୀଚରଣ, ଜଗବନ୍ଧୁ ଓ ଆର୍ତ୍ତବଲ୍ଲଭଙ୍କ ବହି/ଆଲୋଚନାକୁ ଭିତ୍ତିକରି ଏଠାରେ ମାତ୍ର କେତୋଟି ପ୍ରସଙ୍ଗରେ ତଥ୍ୟଗତ ବିବିଧତାକୁ ଆଲୋକିତ କରାଯାଇପାରେ ।

**୧. କେଶରୀ ଓ ଗଙ୍ଗବଂଶୀ ରାଜାମାନଙ୍କ ସଂଖ୍ୟା**

| | ଭବାନୀଚରଣ | ଜଗବନ୍ଧୁ | ଆର୍ତ୍ତବଲ୍ଲଭ |
|---|---|---|---|
| କେଶରୀ ବଂଶ | ୪୪ | ୩୦+୫ | ୬୫ |
| ଗଙ୍ଗବଂଶ | ୧୮ | ୨୦ | ୨୩ |

**୨. ଚୁଡ଼ଗଙ୍ଗଦେବ:** ପ୍ରତ୍ୟେକଙ୍କ ଚର୍ଚ୍ଚାରେ କୌଶଲ୍ୟାଗଙ୍ଗ ଖୋଳାହେବା କାହାଣୀରେ ସାମ୍ୟ ରହିଛି । ମାତ୍ର ଭବାନୀଚରଣ 'ପିପିଲିର୍ ନିକଟେ ଆଛେ ଯା ବିଦ୍ୟମାନ ।' ବୋଲି ଉଲ୍ଲେଖ କରିଛନ୍ତି ।

**୩. ପ୍ରତାପରୁଦ୍ର ଦେବଙ୍କ ଜନ୍ମ ବୃତ୍ତାନ୍ତ:**

**ଭବାନୀଚରଣ :** ପୁରୁଷୋତ୍ତମ ଦେବଙ୍କ ପତ୍ନୀ ପଦ୍ମାବତୀ । ରୂପ ଓ ଗୁଣରେ ଅନୁପମା । ରାଜା ବାରମ୍ବାର ଅନ୍ତଃପୁରକୁ ଆସୁଥିବାର ଦୃଶ୍ୟ ଦାସୀ ପରିବାରୀମାନେ ଲକ୍ଷ୍ୟ କରିଛନ୍ତି । ଏହି ଘଟଣା ସେମାନଙ୍କୁ ଅସ୍ୱାଭାବିକ ଓ ଅପ୍ରୀତିକର ବୋଧ ହୋଇଛି । ରାଜାଙ୍କ କାନରେ ମଧ୍ୟ ଏ ସମ୍ବାଦ ପଡ଼ିଛି । ସେ ବିସ୍ମିତ ହୋଇଛନ୍ତି । ଦିନେ ରାତିରେ ରାଜାଙ୍କୁ ଧବଳେଶ୍ୱର ସ୍ୱପ୍ନରେ ଦର୍ଶନ ଦେଇ କହିଛନ୍ତି, ସେ ହିଁ ରାଜାଙ୍କ ରୂପ ଧରି ପଦ୍ମାବତୀଙ୍କ ସହ ମିଳିତ ହୋଇଛନ୍ତି । ପଦ୍ମାବତୀଙ୍କ ଗର୍ଭସଂଭୂତ ସନ୍ତାନ ହେବ ବୀର, ଗୁଣୀ, ଧାର୍ମିକ ଓ ଉତ୍କଳର ପରବର୍ତ୍ତୀ ଗଜପତି ।

**ଆର୍ତ୍ତବଲ୍ଲଭ:** "× × × ଏ ତ ଆମ୍ଭର ପାର୍ବତୀ । ଆମ୍ଭେ ବିଜେ କରିଥିଲୁ ଏହା ଗର୍ଭେ ଯେଉଁ ପୁଅ ହେବ ସେ ପୃଥ୍ୱୀରେ ରାଜା ହେବ । ଏହା ରାଜା ଶୁଣି ବହୁତ କାକୁସ୍ତ ହୋଇଲେ ! ପ୍ରମୋଦ କରି ରଖିଲେ । ଏ କନ୍ୟା ଗର୍ଭ ହୋଇଅଛି । ଶ୍ରୀନଅରରୁ ଶୁଣିଲେ । ଏ ଉତ୍ତାରୁ ଗର୍ଭରୁ ପୁଅ ଜନ୍ମ ହୋଇଲା ।" (ମାଦଳାପାଞ୍ଜି)

ଏହି ଦୁଇ ବର୍ଣ୍ଣନା ମଧ୍ୟରେ ପାର୍ଥକ୍ୟ ଏତିକି ଯେ, ଆର୍ତ୍ତବଲ୍ଲଭ କାହାଣୀର ପ୍ରଥମରୁ କିଛି ଅଂଶ ଜାଣିଶୁଣି ପତ୍ରସ୍ଥ କରି ନାହାନ୍ତି । ସମଗ୍ର ମାଦଳାପାଞ୍ଜି ପଢ଼ିଲେ ସ୍ପଷ୍ଟ ହୋଇଯାଏ- ପୁରୁଷୋତ୍ତମ ଦେବଙ୍କ ସଂର୍ପରେ କିମ୍ବଦନ୍ତୀର ସଂଖ୍ୟା ଅନ୍ୟମାନଙ୍କଠାରୁ ଅଧିକ । ରାଜା ଆପଣାର କ୍ଷମତାର ପ୍ରତିଷ୍ଠାପାଇଁ ସମ୍ଭବତଃ ଜଗନ୍ନାଥଙ୍କୁ ଚତୁରତାର ସହିତ ବ୍ୟବହାର କରିଛନ୍ତି ଏବଂ ପ୍ରଜା ସମର୍ଥନ ପାଇଛନ୍ତି ।

### ୪. କଳାପାହାଡ଼ର ଓଡ଼ିଶା ଆକ୍ରମଣ:

**ଭବାନୀଚରଣ:** କଳାପାହାଡ଼ର ଜଗନ୍ନାଥଦ୍ରୋହୀ ଆଚରଣକୁ ବଟେଶ୍ୱର ମହାନ୍ତି ସ୍ୱୀକାର କରିପାରି ନାହିଁ । ସେ ତ୍ରିମୂର୍ତ୍ତିଙ୍କୁ ଘୋଷାରି ବଙ୍ଗ ନେଇଯାଉଥିବା କାଳରେ ମହାନ୍ତି ରେସାଲ୍ ବେଶରେ ତା'ର ଅନୁଗମନ କରିଛି । କଳାପାହାଡ଼ ମୂର୍ତ୍ତିମାନଙ୍କୁ ଗଙ୍ଗାକୂଳରେ ପୋଡ଼ିଛି । ପୋଡ଼ିବା କାଳରେ ତାର ଦେହ ଫାଟିଯାଇଛି ଏବଂ ସେ କାଜିର ପରାମର୍ଶରେ ଦରପୋଡ଼ା କାଠଖଣ୍ଡଗୁଡ଼ିକୁ ଗଙ୍ଗା ଭିତରକୁ ଫୋପାଡ଼ି ଦେଇଛି । କାଠଗୁଡ଼ିକ ଭାସିଭାସି ଯାଇ ଉମରରା ବଗିଚା ପାଖରେ ଲାଗିଛି । ସେ ସେଗୁଡ଼ିକୁ ସାଇତି ରଖିଛି । ଉମରା ଜାତିରେ ଅସ୍ପୃଶ୍ୟ ଓ ରୋଗାକ୍ରାନ୍ତ । ବଟେଶ୍ୱର ଉମରା ଘରେ ଦାରୁର ସନ୍ଧାନ ପାଇଛି । ତାକୁ ଦୁରାରୋଗ୍ୟ ବ୍ୟାଧିରୁ ଭଲ କରିଛି । ପ୍ରତିଦାନରେ ମାଗିଛି ଦାରୁ ଚାରିଖଣ୍ଡ । ବଟେଶ୍ୱର ଗୋପନରେ ଦାରୁ ଆଣି ଓଡ଼ିଶା ଫେରିଛି ଏବଂ ମୋଗଲ ଗୋଳ ଥମିଗଲା ପରେ ରାମଚନ୍ଦ୍ର ଦେବଙ୍କ ହାତରେ ଦାରୁଗୁଡ଼ିକୁ ସମର୍ପଣ କରିଛି ।

**ଆର୍ତ୍ତବଲ୍ଲଭ ମହାନ୍ତି :** "ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳ ତଣ୍ଡା ଯାଏ ନେଲା । କାଠ କୁଢ଼ାଇ ଅଗ୍ନିରେ ପୁରୋଇ ଜାଳିଦେଲା । ତେଣେ ପଠାଣର ଦେହ ଖଣ୍ଡ ଖଣ୍ଡ ହୋଇ ଫାଟିଲା । କାଜି କହିଲା- ଓଡ଼ିଶାର ଦେବତା ଜଳାଇଦେଲୁ, ତେଣୁ କରି ତୋହର ଦେହ ଫାଟିଲା । ଏହା ଶୁଣି ତାହାର ପୁଅ ପରମେଶ୍ୱରଙ୍କୁ ଗଙ୍ଗାରେ ମେଲିଦେଲା । ସେ ଦାରୁ ଭାସି ଆସନ୍ତେ ଅମୁରା ଗୋଟିଏ ଜାଳିକାଠ ବୋଲି ଧରି ତାହା ବାରିରେ ପକାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବିଶର ମହାନ୍ତି ଯାଇଥିଲା । ବୈଷ୍ଣବ ହୋଇ ସାଙ୍ଗେ ଗୁଡ଼ାଇଥିଲା । ଆଠମାସ ରହି ବାଦ୍ୟପଣ କରି ଦାରୁ ମାଗିଲା । ବ୍ରହ୍ମଖୋଳ କରି ମୃଦଙ୍ଗ ପୂରୋଇ ଆଣିଲା ।" (ମାଦଳାପାଞ୍ଜି)

ରେଖାଙ୍କିତ ପଦଗୁଡ଼ିକରେ ଦୁଇ ଜଣଙ୍କ ବର୍ଣ୍ଣନାରେ ଥିବା ବୈଷମ୍ୟକୁ ଲକ୍ଷ୍ୟ କରାଯାଇପାରେ ।

### ୫. ଇଂରେଜମାନଙ୍କର ଓଡ଼ିଶା ଅଧିକାର:

**ଭବାନୀଚରଣ:**

ଆଇଲ ସାହେବ ମିଲବିଲ ନାମଧାରୀ ।
ଦକ୍ଷିନ ପ୍ରଦେଶ ହୈତ ସଇନ୍ୟ ଶହ ଚାରି ॥
କଲିକତା ହଇତେ ଜେନେରାଲ୍ ହଟକଟ ।
ସସୈନ୍ୟ ଆଇଲେ ତାର କଟକ ନିକଟେ ॥

ଆର୍ତ୍ତବଲ୍ଲଭ: ''ସେଠାରୁ ମହାରାଜାଙ୍କ ନଅ ଅଙ୍କ ୧୮୦୩ ମସିହାରେ ହୁଣ ନାମକ ଇଂରାଜ ବାହାଦୂର ସାହେବ କଲିକତାରୁ ବଡ଼ ଜନରାଲ ହାରକୋଟ ସାହେବ ବହୁତ ସୈନ୍ୟ ଘେନି ଓଡ଼ିଷାକୁ ଆକ୍ରମଣ କଲେ ।'' (ମାଦଳାପାଞ୍ଜି)

ଏଠାରେ ଗୁରୁତ୍ୱପୂର୍ଣ୍ଣ, ଭବାନୀଚରଣ ସତରଶ ଚଲ୍ଲିଶ୍ ଶତାବ୍ଦ, ମିଲବିଲ ଓ ହଟକଟ ଶବ୍ଦ ଏବଂ ଆର୍ତ୍ତବଲ୍ଲଭ, ୧୮୦୩ ମସିହା, ହୁଣ ଓ ହାରକୋଟ ଶବ୍ଦ ପ୍ରୟୋଗ କରିଛନ୍ତି । ଏବଂ, ଆର୍ତ୍ତବଲ୍ଲଭ ମୁକୁନ୍ଦଦେବଙ୍କ ପାଖରେ ପାଞ୍ଜି ଶେଷ କରିଥିବା ବେଳେ, ଭବାନୀଚରଣ ରାଜା ରାମଚନ୍ଦ୍ର ଦେବଙ୍କ ସଂପର୍କରେ ସୂଚନା ଦେବା ସହିତ ତାଙ୍କୁ ସାହେବଙ୍କ ପରି ଗରମ ମେଜାଜର ମଣିଷ ବୋଲି ଚିତ୍ରଣ କରିଛନ୍ତି । ଏବଂ, ଶେଷରେ କହିଛନ୍ତି-

ଏଇ ରାଜା ଅଦ୍ୟାପି ଆଛେନ୍ ବିଦ୍ୟମାନ ।
ଗୁନିଗଣ ଗୁନଗ୍ରାହୀ ଅତି ପୁଣ୍ୟବାନ ॥
ଏଇ ରୂପ ବର୍ତ୍ତମାନ ସପ୍ତଦଶ ଶତ ।
ଆର୍ ତାହେ ଛୟଷଷ୍ଟି ଶକେ ଅଭିମତ ॥

ଏହି ସ୍ୱୀକାରୋକ୍ତିରୁ ସ୍ପଷ୍ଟ ଯେ ଭବାନୀଚରଣଙ୍କ ଦ୍ୱାରା ଅନୁସୃତ ମାଦଳାପାଞ୍ଜି ଅନ୍ୟମାନଙ୍କଠାରୁ ଅଧିକ ନିର୍ଭରଯୋଗ୍ୟ ଓ ଅପେକ୍ଷାକୃତ କମ୍ ପ୍ରକ୍ଷିପ୍ତାୟିତ ।

ଏବେ ଆଲୋଚନାର ଆରମ୍ଭକୁ ଫେରିବି । କହିଥିଲି ଭବାନୀଚରଣଙ୍କ ସୃଷ୍ଟି ଓଡ଼ିଶାର ଇତିହାସ ଓ ଶ୍ରୀକ୍ଷେତ୍ର ସହିତ ଅନ୍ୟ କ୍ଷେତ୍ରତ୍ରୟୀର ବିବରଣୀ । ଏହି ଉକ୍ତି ସହିତ ଆଉ ଏକ ବାକ୍ୟ ଯୋଡ଼ିଦିଆଯାଇପାରେ- ତାହା ମାଦଳାପାଞ୍ଜି ଓ କ୍ଷେତ୍ର ସହିତ ସମ୍ବନ୍ଧିତ । ସଂସ୍କୃତ ଭାଷାରେ ରଚିତ ପୁରାଣ (କପିଳ ସଂହିତା, ପଦ୍ମ ପୁରାଣ, ଗରୁଡ଼ ପୁରାଣ ଇତ୍ୟାଦି)ଗୁଡ଼ିକର ବିଶ୍ୱସ୍ତ ବଙ୍ଗଳା ଅନୁବାଦ । ବସ୍ତୁତଃ, ଏହା ପାଞ୍ଜି ବର୍ଣ୍ଣିତ ଇତିହାସ, କିମ୍ବଦନ୍ତୀ ଓ ପୁରାଣର ସମବାୟ । ବର୍ଣ୍ଣନାରେ ଗଦ୍ୟ ଓ ପଦ୍ୟ ଉଭୟ ରୀତି ଅନୁସୃତ (ପ୍ରକାଶ ଥାଉ କି ଭବାନୀ ଚରଣ ଆପଣାର ଗଦ୍ୟଗ୍ରନ୍ଥ, ବିଶେଷତଃ ନବବାବୁ ବିଲାସରେ ମଧ୍ୟ ସ୍ଥଳ ବିଶେଷରେ କବିତା ସଂଯୋଜନା କରିଛନ୍ତି) । ପଦ୍ୟଗୁଡ଼ିକ ଦ୍ୱିପଦୀ ଓ ଚଉଦ ଅକ୍ଷର, ତ୍ରିପଦୀ, ଚତୁଃଷ୍ପଦୀ ଓ ପୟାର ଶୈଳୀର । ଜଣେ ସୃଜନଶୀଳ ବ୍ୟକ୍ତିତ୍ୱ ଇତିହାସ, ଦର୍ଶନ, କିମ୍ବଦନ୍ତୀ ଓ ଭ୍ରମଣଜନିତ ଅନୁଭବକୁ କିପରି ହୃଦ୍ୟରୀତିରେ ବ୍ୟାଖ୍ୟା କରିପାରେ । ଏହି ବହି ତାହାର ଉଦାହରଣ । ଏବଂ ଉନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରିଟିଶ୍ ସଂସର୍ଗରୁ ପଲ୍ଲବିତ ବଙ୍ଗଳା ଗଦ୍ୟ ଓ ପଦ୍ୟ ଶୈଳୀର ନମୁନା ।

ମାତ୍ର ଓଡ଼ିଆମାନଙ୍କପାଇଁ ଏହି ବହି ଅନ୍ୟ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ଆମେ ସ୍ୱୀକାର କରିଥାଉ, ମାଦଳାପାଞ୍ଜି ଓଡ଼ିଶା ଇତିହାସ ରଚନାପାଇଁ ଅନ୍ୟତମ ଉପାଦାନ ଓ

ମଧ୍ୟଯୁଗୀୟ ଓଡିଆ ଗଦ୍ୟଶୈଳୀର ନମୁନା । ମାତ୍ର ଏଯାବତ୍ ଏହି ଗ୍ରନ୍ଥ ସୁସଂପାଦିତ ହୋଇ ନାହିଁ । ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସାଧୁ ଉଦ୍ୟମ ପୋଥିର ବିଶ୍ୱସ୍ତ ଓ ଅପବାଦମୁକ୍ତ ସଂପାଦନା ନୁହେଁ । ପୁନଶ୍ଚ ମୃତ୍ୟୁଞ୍ଜୟ ନାୟକଙ୍କ ନାମରେ ମଧ୍ୟ ଅନ୍ୟ ଏକ ସଂପାଦିତ ବହି ବଜାରରେ ମିଳୁଛି । ତାହା ଆର୍ତ୍ତବଲ୍ଲଭଙ୍କ ସଂପାଦନା ରୀତିର ବିକଳ ଅନୁକୃତି । ତେଣୁ ଆଜି, ପାଞ୍ଜିର ଏକ ଆପାତଃ ଅପବାଦମୁକ୍ତ ଓ ବୈଜ୍ଞାନିକ ସଂପାଦନାର ଆବଶ୍ୟକତା ଅନୁଭୂତ ହେଉଛି । ଏବଂ, ଏଥିପାଇଁ ଭବାନୀଚରଣ ଓ ଶିବଚନ୍ଦ୍ରଙ୍କ ଗ୍ରନ୍ଥଗୁଡ଼ିକ ଏକ ଏକ ବିଶ୍ୱସ୍ତ ଓ ମୂଲ୍ୟବାନ ଐତିହାସିକ ଦଲିଲ୍ ।

## ନିର୍ବାଚିତ ଆକର ସୂଚୀ


| | |
|---|---|
| ଆଚାର୍ଯ୍ୟ, ପ୍ୟାରୀମୋହନ | ୧୮୭୯, ଓଡ଼ିଶାର ଇତିହାସ, କଟକ |
| ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର | ୧୯୬୩, ଇତିହାସ ଓ କିମ୍ବଦନ୍ତୀ, ଭୁବନେଶ୍ୱର, ଉତ୍କଳ ବିଶ୍ୱବିଦ୍ୟାଳୟ |
| ବନ୍ଦ୍ୟୋପାଧ୍ୟାୟ, ଭବାନୀଚରଣ | ୧୮୪୪, ଶ୍ରୀପୁରୁଷୋତ୍ତମ ଚନ୍ଦ୍ରିକା, କଲିକତା, ସମାଚାର ଚନ୍ଦ୍ରିକା ଯନ୍ତ୍ରାଳୟ |
| ମହାନ୍ତି, ଆର୍ତ୍ତବଲ୍ଲଭ | ୧୯୪୦/୬୯, ମାଦଳାପାଞ୍ଜି, ଭୁବନେଶ୍ୱର, ଉତ୍କଳ ବିଶ୍ୱବିଦ୍ୟାଳୟ |
| ସିଂହ, ଜଗବନ୍ଧୁ | ୧୯୬୪ (ଦ୍ୱି.ସଂ), ପ୍ରାଚୀନ ଉତ୍କଳ, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡେମୀ |
| ସଟନ, ଆମସ୍ | ୧୮୪୦, ଓଡ଼ିଶାର ସାର ସଂଗ୍ରହଃ ଅଥଃ ଓଡ଼ିଶା ଆଦି ବିବରଣ ସଂକ୍ଷେପ, କଟକ, ଓଡ଼ିଶା ମିଶନ୍ ପ୍ରେସ୍ |
| ସୋମ, ଶିବଚନ୍ଦ୍ର | ୧୭୮୪, ଶକାବ୍ଦ, ଓଡ଼ିଶ୍ୟାର ଇତିହାସ, କଲିକତା, ଶ୍ରୀଯୁକ୍ତ ଈଶ୍ୱର ଚନ୍ଦ୍ର ବସୁ କୋ ବହୁବଜାର |
| Andrew, Sterling | 1925, An Account of Geographical, Statistical and Hiostorical of Orissa Proper or Cuttack. |
| Ghos, Braja Kishore | 1848, A History of Puri with an Account of Jagannath. |

| | |
|---|---|
| **Hans, Herder** | 2004, The Modern Babu & the Metropolies, Reassessing Earty Bengali Narrative Prose (1821-1862), in, Stuart Blackburn and Basudha Dalmia. ed: India's Literary History, New Delhi Permanent Black. |
| **Hunter, W.W.** | 1872, Orissa History, London, Smith, Elder & CO. |
| **Kopf, David** | 1969, British Orientalism and Bengal Renaissance, Culcutta, Firma K.L Mukhopadhaya. |
| **Laurie, W .F.B.** | 1850, Orissa: The Garden of Superstition and Idolatry, London, John Stone and Hunter. |
| **Mitra, Rajendra Lal** | 1875,1880, Antiquities of Orissa, Calcutta, Wiman & Company, Hare Street. |
| **Sastri, Sivanath** | 1911/74, History of the Brahma Samaj, Calcutta, Sadharana Brahma Samaj, Calcutta-6. |
| **Sen, Sukumar** | 1960, History of Bengali literature, New Delhi, Sahitya Akademi. |
| **Sutton, Amos** | 1850, Orissa and Its Evangalizitaion, Berby. England. |
| **Toyonobi, G** | 1872, A Sketch of History of Orissa: From 1803-1823 |



# ନିର୍ଘଣ୍ଟ



| ରାଜ୍ୟ | ଭୁକ୍ତ ବର୍ଷ |
|---|---|
| ରାଜା ଯୁଧିଷ୍ଠିର | ୧୨ବର୍ଷ |
| ପରୀକ୍ଷିତ | ୭୩ବର୍ଷ |
| ତସ୍ସୁତ ଜନମେଜୟ | ୫୫୧ବର୍ଷ |
| ତସ୍ସୁତ ଶଙ୍କର ଦେବ | ୪୦୦ବର୍ଷ |
| ତସ୍ସୁତ ଗୌତମ ଦେବ | ୩୭୦ବର୍ଷ |
| ତସ୍ସୁତ ମହେନ୍ଦ୍ର ଦେବ | ୨୧୫ବର୍ଷ |
| ତସ୍ସୁତ ଇଷ୍ଟଦେବ | ୧୩୪ବର୍ଷ |
| ସେବକ ଦେବ | ୧୫୦ବର୍ଷ |

| | |
|---|---|
| ବଜ୍ରନାଭ ଦେବ | ୧୧୭ବର୍ଷ |
| ତସ୍ସୁତ ନୃସିଂହ ଦେବ | ୧୧୫ବର୍ଷ |
| ତସ୍ସୁତ ମନକୃଷ୍ଣ ଦେବ | ୧୨୨ବର୍ଷ |
| ଭୋଜଦେବ | ୧୨୭ବର୍ଷ |
| ବିକ୍ରମାଦିତ୍ୟର ଅଧିକାରେ ରାଜା ଶକାଦିତ୍ୟ | ୧୩୫ବର୍ଷ |
| ଇହାତେ କଲିର ଗତହୟ | ୩୧୭୯ବର୍ଷ |

ଏଇ ଶକାଦ୍ଦୀତ୍ୟେର ମୃତ୍ୟୁର ପର ଶକେର ସୃଷ୍ଟି ହୟ ।

| | | ଶକାବ୍ଦ |
|---|---|---|
| କର୍ମାର୍ଜିତ ଦେବ | ୬୫ | ୬୫ |
| ତସ୍ସୁତ ହାଟକେଶ୍ୱର ଦେବ | ୫୧ | ୧୧୬ |
| ତସ୍ସୁତ ବୀର ଭୁବନ ଦେବ | ୪୩ | ୧୫୯ |
| ତସ୍ସୁତ ନିର୍ମଳ ଦେବ | ୪୫ | ୨୦୪ |
| ତସ୍ସୁତ ଭୀମ ଦେବ | ୩୭ | ୨୪୧ |
| ତସ୍ସୁତ ଶୋଭନ ଦେବ | ୪ | ୨୪୫ |

ଏଇ ରାଜାର ଅଧିକାର କାଲେ ରକ୍ତବାହୁ ଯବନ ପୁରୀତେ ଦୌରାତ୍ମ୍ୟ କରେ ଏବଂ ଐ ଯବନେର ଭୟେ ରାଜା ଜଗନ୍ନାଥକେ ଲଇୟା ପୁରୀ ହଇତେ ଦଶଦିନର ପଥ ଶୋଣପୁର ନାମକ ସ୍ଥାନେ କିଛୁକାଲ ବାସ କରିୟା ଶେବ ପର୍ବତ ଗହ୍ୱରେ ଚାରିମୂର୍ତ୍ତି ପ୍ରୋତ୍ଥିତ କରିୟା ଲୁକ୍କାୟିତ ରଖେନ ।

| | | |
|---|---|---|
| ତସ୍ସୁତ ଚନ୍ଦ୍ରଦେବ | ୫ | ୨୫୦ |
| ଯବନାଧିକାର | ୧୪୬ | ୩୯୬ |
| ଯଯାତି କେଶରୀ ଦେବ | ୫୨ | ୪୪୮ |

ଏହି ରାଜା ୨୦୩ ବସ୍ସର ପରେ ମୃତ୍ତିକା ହଇତେ ଶ୍ରୀମୂର୍ତ୍ତି ଉଠାଇୟା ପୁନଃ ସ୍ଥାପନ କରେନ ।

| | | |
|---|---|---|
| ତସ୍ସୁତ ସୂର୍ଯ୍ୟକେଶରୀ ଦେବ | ୫୭ | ୫୦୫ |
| ତସ୍ସୁତ ଅନନ୍ତକେଶରୀ ଦେବ | ୪୦ | ୫୪୫ |
| ତସ୍ସୁତ ଅଲାବୁକେଶରୀ ଦେବ | ୫୪ | ୫୯୯ |

ଏହି ରାଜା ଉତ୍କଳ ଦେଶର ମନ୍ଦିର ପ୍ରସ୍ତୁତ କରେନ ।

| | | |
|---|---|---|
| ତସ୍ସୁତ କାନନକେଶରୀ ଦେବ | ୧୬ | ୬୧୫ |
| ତସ୍ସୁତ ବୀରକେଶରୀ ଦେବ | ୮ | ୬୨୩ |
| ତସ୍ସୁତ ପଦ୍ମକେଶରୀ ଦେବ | ୫ | ୬୨୮ |

| | | |
|---|---|---|
| ତସ୍ସୁତ ବୁଦ୍ଧକେଶରୀ ଦେବ | ୯ | ୬୩୭ |
| ତସ୍ସୁତ ବଟକେଶରୀ ଦେବ | ୧୧ | ୬୪୮ |
| ତସ୍ସୁତ ଗଜକେଶରୀ ଦେବ | ୧୨ | ୬୬୦ |
| ତସ୍ସୁତ ବସନ୍ତକେଶରୀ ଦେବ | ୨ | ୬୬୨ |
| ଗନ୍ଧର୍ବ କେଶରୀ ଦେବ | ୧୪ | ୬୭୬ |
| ତତ୍ପୁତ୍ର ଜନ୍ମେଜୟକେଶରୀ ଦେବ | ୯ | ୬୮୫ |
| ତତ୍ପୁତ୍ର ଭରତକେଶରୀ ଦେବ | ୧୫ | ୭୦୦ |
| ତତ୍ପୁତ୍ର କଳିକେଶରୀ ଦେବ | ୧୪ | ୭୧୪ |
| ତତ୍ପୁତ୍ର କମଳକେଶରୀ ଦେବ | ୧୯ | ୭୩୩ |
| ତତ୍ପୁତ୍ର କୁଣ୍ଡଳକେଶରୀ ଦେବ | ୧୮ | ୭୫୧ |

ଏହି ରାଜା ମାର୍କେଣ୍ଡେଶ୍ୱରରେ ଦେଉଳ ପ୍ରସ୍ତୁତ କରେନ ।

| | | |
|---|---|---|
| ତତ୍ପୁତ୍ର ଚନ୍ଦ୍ରକେଶରୀ ଦେବ | ୧୭ | ୭୬୮ |
| ତତ୍ପୁତ୍ର ବୀରଚନ୍ଦ୍ରକେଶରୀ ଦେବ | ୧୯ | ୭୮୭ |
| ତତ୍ପୁତ୍ର ଅମୃତକେଶରୀ ଦେବ | ୧୦ | ୭୯୭ |
| ତତ୍ପୁତ୍ର ବିଜୟକେଶରୀ ଦେବ | ୧୫ | ୮୧୨ |
| ତତ୍ପୁତ୍ର ଚନ୍ଦ୍ରପାଳକେଶରୀ ଦେବ | ୧୪ | ୮୨୬ |
| ତତ୍ପୁତ୍ର ମଧୁସୂଦନକେଶରୀ ଦେବ | ୧୬ | ୮୪୨ |
| ତତ୍ପୁତ୍ର ଧର୍ମକେଶରୀ ଦେବ | ୧୦ | ୮୫୨ |
| ତତ୍ପୁତ୍ର ଜନକେଶରୀ ଦେବ | ୧୧ | ୮୬୩ |
| ତତ୍ପୁତ୍ର ନୃପକେଶରୀ ଦେବ | ୧୨ | ୮୭୫ |
| ତତ୍ପୁତ୍ର ମକରକେଶରୀ ଦେବ | ୮ | ୮୮୩ |
| ତତ୍ପୁତ୍ର ତ୍ରିପୁରକେଶରୀ ଦେବ | ୧୦ | ୮୯୩ |
| ତତ୍ପୁତ୍ର ମାଧବକେଶରୀ ଦେବ | ୧୮ | ୯୧୧ |
| ତତ୍ପୁତ୍ର ଗୋବିନ୍ଦକେଶରୀ ଦେବ | ୧୦ | ୯୨୧ |
| ତତ୍ପୁତ୍ର ନୃତ୍ୟକେଶରୀ ଦେବ | ୧୪ | ୯୩୫ |
| ତତ୍ପୁତ୍ର ନୃସିଂହକେଶରୀ ଦେବ | ୧୧ | ୯୪୬ |
| ତତ୍ପୁତ୍ର କୂର୍ମକେଶରୀ ଦେବ | ୧୦ | ୯୫୬ |
| ତତ୍ପୁତ୍ର ମତ୍ସ୍ୟକେଶରୀ ଦେବ | ୧୬ | ୯୭୨ |

ଏହି ରାଜା ଅଠାରାନଲାର ପୁଲ କରେନ ।

| | | |
|---|---|---|
| ତତ୍ପୁତ୍ର ବରାହକେଶରୀ ଦେବ | ୧୫ | ୯୮୭ |
| ତତ୍ପୁତ୍ର ବାମନକେଶରୀ ଦେବ | ୧୩ | ୧୦୦୦ |
| ତତ୍ପୁତ୍ର ପରଶୁକେଶରୀ ଦେବ | ୨ | ୧୦୦୨ |
| ତତ୍ପୁତ୍ର ଚନ୍ଦ୍ରକେଶରୀ ଦେବ | ୧୨ | ୧୦୧୪ |
| ତତ୍ପୁତ୍ର ସୁଜନକେଶରୀ ଦେବ | ୭ | ୧୦୨୧ |
| ତତ୍ପୁତ୍ର ମାଳିନୀକେଶରୀ ଦେବ | ୫ | ୧୦୨୬ |

ଏହି ରଜାର ରାଣୀ ଭୁବନେଶ୍ୱରେର ନାଟ ମନ୍ଦିର ପ୍ରସ୍ତୁତ କରେନ ।

| | | |
|---|---|---|
| ତତ୍ପୁତ୍ର ପ୍ରଭଞ୍ଜନକେଶରୀ ଦେବ | ୩ | ୧୦୨୯ |
| ତତ୍ପୁତ୍ର ବିଷ୍ଣୁକେଶରୀ ଦେବ | ୧୨ | ୧୦୪୧ |
| ତତ୍ପୁତ୍ର ଇନ୍ଦ୍ରକେଶରୀ ଦେବ | ୪ | ୧୦୪୫ |
| ତତ୍ପୁତ୍ର ସୁବର୍ଣ୍ଣକେଶରୀ ଦେବ | ୯ | ୧୦୫୪ |

ଏହି ପର୍ଯ୍ୟନ୍ତ କେଶରୀ ବଂଶ ଲୋପ ହୁଏ ।

| | | |
|---|---|---|
| ଚୋରଗଙ୍ଗ | ୨୦ | ୧୦୭୪ |
| ତତ୍ପୁତ୍ର ଗଙ୍ଗେଶ୍ୱର ଦେବ | ୧୪ | ୧୦୮୮ |
| ତତ୍ପୁତ୍ର ଏକଜଟା କାମଦେବ | ୫ | ୧୦୯୩ |
| ତତ୍ପୁତ୍ର ମଦନ ମହାଦେବ | ୪ | ୧୦୯୭ |
| ତଦ୍ଭ୍ରାତା ଅନଙ୍ଗଭୀମ ଦେବ | ୨୭ | ୧୧୨୪ |

ଏହି ରାଜା ବର୍ତ୍ତମାନର ଶ୍ରୀମନ୍ଦିର ନିର୍ମାନ୍ କରେନ ।

| | | |
|---|---|---|
| ତତ୍ପୁତ୍ର ରାଜରାଜେଶ୍ୱର ଦେବ | ୩୫ | ୧୧୫୯ |
| ତତ୍ପୁତ୍ର ନାଙ୍ଗୁଡିୟା ନୃସିଂହ ଦେବ | ୪୫ | ୧୨୦୪ |

ଏହି ରାଜା ପଦ୍ମକ୍ଷେତ୍ର ଅର୍ଥାତ୍ କଣାରକେ ସୂର୍ଯ୍ୟଦେବେର୍ ମନ୍ଦିର ନିର୍ମାନ୍ କରେନ ।

| | | |
|---|---|---|
| କେଶରୀ ନୃସିଂହ ଦେବ | ୨୫ | ୧୨୨୯ |

ଏହି ରାଜା ବଳଗଣ୍ଡି ନଦୀ ଭରାଟ କରିୟା ରଥ ଗମନେର ସୁଗମ କରେନ। ଅର୍ଥାତ୍ ପୂର୍ବେ ନଦୀ ବ୍ୟବଧାନ ପ୍ରଯୁକ୍ତ ତିନିରଥେ ଗମନ କରିୟା ରଥ ହଇତେ ଅବରୋହନ ପୂର୍ବକ ନୌକାରୋହନାନନ୍ତର ଅପର ତିନି ରଥେ ଯାତ୍ରା ହଇତ। ରାଜା ନଦୀ ଭରଟ କରିଲେ ତିନି ରଥ ମାତ୍ର ହଇୟାଛେ। ରାଜାର ଅପର କୀର୍ତ୍ତି ନରେନ୍ଦ୍ର ସରୋବର।

| | | |
|---|---|---|
| ତତ୍ପୁତ୍ର ପ୍ରତାପ ନୃସିଂହ ଦେବ | ୨୦ | ୧୨୪୯ |
| ତତ୍ପୁତ୍ର ଗତିକାନ୍ତ ଦେବ | ୨ | ୧୨୫୧ |

| | | |
|---|---|---|
| ତତ୍‌ପୁତ୍ର କାଜଳା ନୃସିଂହ ଦେବ | ୧ | ୧୨୫୨ |
| ତତ୍‌ପୁତ୍ର ଶଙ୍ଖଭସୁର ନରସିଂହ ଦେବ | ୭ | ୧୨୫୯ |
| ତତ୍‌ପୁତ୍ର ଶଙ୍ଖ ବାସୁଦେବ | ୨୪ | ୧୨୮୩ |

ଏହି ରାଜା ଶ୍ରୀମନ୍ଦିରେ ନୀଳଚକ୍ର ବସାନ ।

| | | |
|---|---|---|
| ତତ୍‌ପୁତ୍ର ବଳି ବାସୁଦେବ | ୨୧ | ୧୩୦୪ |
| ତତ୍‌ପୁତ୍ର ବୀର ବାସୁଦେବ | ୧୯ | ୧୩୨୩ |
| ତତ୍‌ପୁତ୍ର କଳି ବାସୁଦେବ | ୧୩ | ୧୩୩୬ |
| ତତ୍‌ପୁତ୍ର ନେଙ୍ଗଟଆଁଟା ବାସୁଦେବ | ୧୫ | ୧୩୫୧ |
| ତତ୍‌ପୁତ୍ର ନେତ୍ର ବାସୁଦେବ | ୨୩ | ୧୩୭୪ |
| କପିଳେନ୍ଦ୍ର ଦେବ | ୨୭ | ୧୪୦୧ |
| ତତ୍‌ପୁତ୍ର ପୁରୁଷୋତ୍ତମ ଦେବ | ୨୫ | ୧୪୨୬ |

ଏହି ରାଜା ଅଧିକାର କାଳେ ଶ୍ରୀଶୁଭ ଚୈତନ୍ୟ ଦେବ କ୍ଷେତ୍ରଧାମେ ଗମନ କରେନ ।

| | | |
|---|---|---|
| ପ୍ରତାପରୁଦ୍ର ଦେବ | ୨୮ | ୧୪୫୪ |
| ତତ୍‌ପୁତ୍ର କାଳୁଆ ଦେବ | ୧ | ୧୪୫୫ |
| ତତ୍‌ପୁତ୍ର କଖାରୁଆ ଦେବ | ୧ | ୧୪୫୬ |
| ଗୋବିନ୍ଦ ବିଦ୍ୟାଧର | ୭ | ୧୪୬୩ |
| ଚକ୍ର ପ୍ରତାପ | ୮ | ୧୪୭୧ |
| ନୃସିଂହ ଜାନା | ୧ | ୧୪୭୨ |
| ରଘୁନାଥ ଛୋଟରା | ୧ | ୧୪୭୩ |
| ମୁକୁନ୍ଦ ଦେବ | ୮ | ୧୪୮୧ |

ଏହି ରାଜାର ଅଧିକାର କାଳେର୍ କଳାପାହାଡ଼ କ୍ଷେତ୍ର ଆଇସେ ।

| | | |
|---|---|---|
| ଗୌଡୀୟ ଗୋବିନ୍ଦ ଦେବ | ୨ | ୧୪୮୩ |

ଏହି ରାଜାର ଅଧିକାର ସମୟେ ଦୋଲେ ଯାଇତେ ବଳଦେବ ମୂର୍ତ୍ତିର ହସ୍ତ ଭଗ୍ନ ହୟ । ଦେବର୍ଷି ଦୋଳଗୋବିନ୍ଦ ବିଗ୍ରହେର୍ ଦୋଳ ହଇରମ୍ଭା ଥାକେ ଏବଂ କଳାପାହାଡ଼ ପୁରୀଧାମ ଲୁଟ୍ କରେ । ଶ୍ରୀମୂର୍ତ୍ତିକେ ଦଗ୍ଧ କରେ

| | | |
|---|---|---|
| ଇତ୍ୟାଦିତେ ଅରାଜକ ହୟ | ୧୯ | ୧୫୦୨ |
| ରାମଚନ୍ଦ୍ର ଦେବ | ୨୯ | ୧୫୩୧ |

ଏହି ରାଜାର ଅଧିକାର କାଳେ ଦିଲ୍ଲୀ ହଇତେ ମାନସିଂହ ଆସିୟା ଏ ରାଜା କରେ ସ୍ଥାପିତ କରିୟାଯାନ । ଏବା ରାଜା କର୍ତ୍ତୃକ ଶ୍ରୀମୂର୍ତ୍ତି ପୁନଃ ସ୍ଥାପିତ ହନ୍ ।

| | | |
|---|---|---|
| ତତ୍ପୁତ୍ର ପୁରୁଷୋତ୍ତମ ଦେବ | ୨୧ | ୧୫୫୨ |
| ତତ୍ପୁତ୍ର ନୃସିଂହ ଦେବ | ୨୫ | ୧୫୭୭ |
| ତତ୍ପୁତ୍ର ଗଙ୍ଗାଧର ଦେବ | ୧ | ୧୫୭୮ |
| ତତ୍ପୁତ୍ର ବଳଭଦ୍ର ଦେବ | ୮ | ୧୫୮୬ |
| ତତ୍ପୁତ୍ର ମୁକୁନ୍ଦ ଦେବ | ୨୮ | ୧୬୧୪ |
| ଦିବ୍ୟସିଂହ ଦେବ | ୨୩ | ୧୬୩୭ |
| ତତ୍ ସହୋଦର କୃଷ୍ଣଦେବ | ୫ | ୧୬୪୨ |
| ତତ୍ପୁତ୍ର ଗୋପୀନାଥ ଦେବ | ୭ | ୧୬୪୯ |
| ରାମଚନ୍ଦ୍ର ଦେବ | ୧୭ | ୧୬୬୬ |
| ବୀରକିଶୋର ଦେବ | ୩୭ | ୧୭୦୩ |
| ତତ୍ପୌତ୍ର ଦିବ୍ୟସିଂହ ଦେବ | ୧୮ | ୧୭୨୧ |
| ମୁକନ୍ଦ ଦେବ | ୧୯ | ୧୭୪୦ |

ଏହି ରଜାର ଅଧିକାର କାଳେ ପୁରୁଷୋତ୍ତମ ଧାମେ ଇଂରେଜ ବାହାଦୂରେର୍ ଅଧିକାର ହୟ ।

ତତ୍ପୁତ୍ର ରାମଚନ୍ଦ୍ର ଦେବ ୧୭୪୧ ଶକେ ରାଜା ହନ୍ ।

ଏଇ ପର୍ଯ୍ୟନ୍ତ କଲିର ଗତି ୪୯୧୯

ଏଇ ରାଜା ଏକ୍ଷଣେ ରାଜତ୍ୱ କରିତେଛନ ।

ଚକ୍ର କ୍ଷେତ୍ରେ ବୃତ୍ତାନ୍ତ

ଗଦାକ୍ଷେତ୍ର

ଯାଜପୁରେର ପାଣ୍ଡାର ବୃତ୍ତାନ୍ତ

ପଦ୍ମକ୍ଷେତ୍ର



## ଶ୍ରୀ ଶ୍ରୀ ଜଗନ୍ନାଥଃ

# ଶ୍ରୀ ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା

ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ ।
ବଳଭଦ୍ର ସୁଭଦ୍ରାଭ୍ୟାଂ ଜଗନ୍ନାଥାୟତେ ନମଃ ॥

ଶ୍ରୀକ୍ଷେତ୍ର ଧାମେର ବାର୍ତ୍ତା କରିବ ବର୍ଣ୍ଣନ ।
ଉତ୍କଳଖଣ୍ଡ ମତ କରିୟା ଦର୍ଶନ ॥

ସ୍ଥୂଳ ତାପର୍ଯ୍ୟ ସବ ଇହାତେ ପାଇବେ ।
ସୂକ୍ଷ୍ମେ ଯାର ବାଞ୍ଛା ହୟ ପୁରାନେ ଶୁନିବେ ॥

କ୍ଷେତ୍ର ପରିମାଣ ଦଶ ଯୋଜନ ନିର୍ଣ୍ଣୟ ।
ଦେଖେ ଶୁନେ ଲିଖି ଯାହା ପୁରାନେ ନିଶ୍ଚୟ ॥

ଶୁନ ସୀମା ଲିଖି ତାର ତଦାଦି ତଦନ୍ତ ।
ଋଷିକୁଲ୍ୟା ନଦୀବଧି ବିରଜା ପର୍ଯ୍ୟନ୍ତ ॥

ବୈତରଣୀ ନାମେ ନଦୀ ବିରଜା ଜାନିବା ।
ନଦୀ ତୀରେ ଯାଜପୁରେ ମଣିମୟୀ ଶିବା ॥

ଏ ଦଶ ଯୋଜନ ମଧ୍ୟେ ଚାରିକ୍ଷେତ୍ର ଧାମ ।
ବିଶେଷ କରିୟା କହି ପ୍ରତ୍ୟେକେର ନାମ ॥

ଶ୍ରୀକୃଷ୍ଣେର ଚାରି ହସ୍ତେ ଯେ ଚାରି ଭୂଷନ ।
ତାତେ ଚାରି ପୁରୀ ହୟ ଶୁନ ବିଚକ୍ଷନ ॥

ଶଙ୍ଖକ୍ଷେତ୍ରେ ଜଗନ୍ନାଥ କରେନ ବିରାଜ ।
ଚକ୍ରକ୍ଷେତ୍ରେ ଭୁବନେଶ୍ୱର ମହାରାଜ ॥

ଗଦାକ୍ଷେତ୍ରେ ସର୍ବଦା ବିରଜା ବିରଜିତା ।
ଗୟାସୁର ନାଭିକୁଣ୍ଡେ ପୁରୀ ସୁଶୋଭିତା ॥

ପଦ୍ମକ୍ଷେତ୍ରେ ସୂର୍ଯ୍ୟଦେବ ସଦା ଅଧିଷ୍ଠାନ ।
ଚନ୍ଦ୍ରଭଗା ନଦୀ ତଥା ଆଛେ ବିଦ୍ୟମାନ ॥

ପୁରୀର ମହାତ୍ମ୍ୟ କଥା ପୁରାଣେ ଅଶେଷ ।
କପିଳ ସଂହିତା ଗ୍ରନ୍ଥେ ଆଛୟେ ବିଶେଷ ।।

ଏ ଚାରି କ୍ଷେତ୍ରେର କଥା କ୍ରମେତେ ଲିଖିବ ।
ପ୍ରଥମତ ଶଙ୍ଖକ୍ଷେତ୍ର ତାହାଇ କହିବ ।।

ଶଙ୍ଖକ୍ଷେତ୍ର ପଞ୍ଚକ୍ରୋଶ ପୁରୀ ଯାଁର ନାମ ।
ଇତ୍ୟର୍ଥେ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ଧାମ ।।

ନୀଳାଚଲୋପରି ଭୂ ବୈକୁଣ୍ଠ ନାମ ଯା'ର ।
ସୁବର୍ଣ୍ଣ ବାଲୁକା ଭୂମି ଶଙ୍ଖେର ଆକାର ।।

ଦୈର୍ଘ୍ୟ ପଞ୍ଚକ୍ରୋଶ ହବେ ସୀମା ସୁପ୍ରକାଶ ।
ପଶ୍ଚିମ ଦିଗେତେ ଲୋକନାଥେର ନିବାସ ।।

ଏ ଶଙ୍ଖେର ମୂଳଦେଶ ଏ ସ୍ଥାନ କୟ ।
ଶୁନି ରାମଚନ୍ଦ୍ର ଦଶରଥେର ତନୟ ।।

ସ୍ଥାପିଲେନ ଶିବଲିଙ୍ଗ ଲୋକନାଥ ନାମ ।
ଦଶରଥ ନାହି ହୟ ଦୃଶ୍ୟ ହୟ ଧାମ ।।

କୂପ ମଧ୍ୟେ ଜଳମଗ୍ନ ଆଛେନ ସର୍ବଦା ।
ଅଲାବୁ ଆକାର ମୂର୍ତ୍ତି ଅଭୟ ବରଦା ।।

ଆର ନାନା ଶିବଲିଙ୍ଗ ଆଚେନ ତଥାୟ ।
ତଥାକାର ପଣ୍ଡାଗନ ତାହାଇ ଦେଖାୟ ।।

ଶୁନିୟାଛି ଶିବରାତ୍ରି ବ୍ରତେର ସମୟ ।
ଅର୍ଦ୍ଧରାତ୍ର ହଲେ ଲିଙ୍ଗ ଦରଶନ ହୟ ।।

ଇହାରେ ଦେଖିଲେ ପାୟ ସକଲେ ସନ୍ତୋଷ ।
ବାଲୁକାର ପଥେ ଯେତେ ହୟ ଏକ କ୍ରୋଶ ।।

ଏ ଅବଧି ଶଙ୍ଖ ଅଗ୍ରଭାଗ ତଥା ।
ବିଲ୍ୱେଶ୍ୱର ଶିବଲିଙ୍ଗ ବିରାଜେନ ଯଥା ।।

ପଶ୍ଚିମ ଅବଧି ପୂର୍ବ ଦୁଇ ଶିବ ସୀମା ।
ବେଦ ପୁରାଣେତେ ଶୁନି ଅପାର ମହିମା ।।

ଶଙ୍ଖ ମଧ୍ୟସ୍ଥାନେ ଲିଙ୍ଗ ନୀଳକଣ୍ଠ ନାମ ।
ଅବଶ୍ୟ ଦେଖିବେ ତାଁରେ କରିବେ ପ୍ରଣାମ ।।

ଶଙ୍ଖର ଉଦର ଭାଗ ଦକ୍ଷିଣ ଦିଗ ବଲେ ।
ତାର ଦୁଇ କ୍ରୋଶ ମଗ୍ନ ସମୁଦ୍ରେର ଜଲେ ॥

ଏଇ ହେତୁ ତୀର୍ଥରାଜ ହଲେନ ଜଲଧି ।
ଶଙ୍ଖକ୍ଷେତ୍ର ସ୍ପର୍ଶ ତା'ର ହଲ ଯଦବଧି ॥

ଏଇସ୍ଥାନେ ଚାରିରାଜ ବେଦେର ଲିଖନ ।
ବିଶେଷ ତାହାର କହି ଶୁନ ସର୍ବଜନ ॥

ଦେବରାଜ ଜଗନ୍ନାଥ ଅତି ଦୟାମୟ ।
ତାଁର ମୁଖ ଦରଶନେ ସବେ ମୁକ୍ତ ହୟ ॥

ଅକ୍ଷୟ ବଟେରେ ବୃକ୍ଷରାଜ କହା ଯାୟ ।
ବ୍ରହ୍ମହତ୍ୟା ପାପନାଶେ ଯାଁହାର ଛାୟାୟ ॥

ତୀର୍ଥରାଜ ଜଲନିଧି ଶୁନ ମହାଜନ ।
ସ୍ନାନେ ମୁକ୍ତ ହୟ ଲୋକ ବେଦେର ବଚନ ॥

କ୍ଷେତ୍ରରାଜ ପୁରୁଷୋତ୍ତମ ନିକେତନ ।
ଇହାତେ ମରିଲେ ମୁକ୍ତି ହୟ ସେଇକ୍ଷନ ॥

ଅଷ୍ଟ ମହାଦେବ ଏଇ ପୁରୀ ରକ୍ଷାକାରୀ ।
ନାମ ଧାମ କହି ଶୁନ ବୁଝଇ ବିଚାରି ॥

ଆଦ୍ୟ ମାର୍କଣ୍ଡେୟେଶ୍ୱର ଶଙ୍ଖେର ଉତ୍ତର ।
ଦକ୍ଷିନ ପ୍ରଦେଶେ ଶିବ ନାମେ ଯଜ୍ଞେଶ୍ୱର ॥

ନୀଲକଣ୍ଠେଶ୍ୱର ପୂର୍ବ ଦିଗେତେ ସ୍ଥାପିତ ।
ଏଦିଗେ ଆର ବିଲ୍ୱେଶ୍ୱର ବିରାଜିତ ॥

ପଶ୍ଚିମ ପ୍ରଦେଶବର୍ତ୍ତୀ କପାଲମୋଚନ ।
କ୍ଷେତ୍ରପାଲ ନାମେ ଖ୍ୟାତ ମଧ୍ୟେ ସେଇ ଜନ ॥

ବଟମୂଲେ ବଟେଶ୍ୱର ମହା ଘୋରତର ।
ଈଶାନ କୋଣେତେ ଈଶାନେଶ୍ୱର ବର ॥

ଏଇ ସବ ଲିଙ୍ଗ ଯେଇ ଦରଶନ କରେ ।
ଦଶ ଅଶ୍ୱମେଧ ଫଲ କରିଲ ସେ କରେ ॥

ଆର ଅଷ୍ଟଚଣ୍ଡୀ ତାଁରା ଭବେର ଭାବିକା ।
ଲକ୍ଷ୍ମୀ ଅଂଶ ସମୁଦ୍‌ଭୂତା ଶ୍ରୀକ୍ଷେତ୍ର ପାଳିକା ॥

ସେ ସକଳ ନାମ ଏବେ କରିବ ନିର୍ଣ୍ଣୟ ।
ବୁଝିବା ଭକତ ସବ ସାଧୁ ସଦାଶୟ ॥

ଅକ୍ଷୟ ବଟେର ମୂଳେ ଦେବୀ ଶ୍ରୀମଙ୍ଗଳା ।
ପ୍ରଭୁର ପଶ୍ଚିମ ଦିଗେ ଆଛେନ ବିମଳା ॥

ତନ୍ତ୍ରମତେ ଅଷ୍ଟପୀଠ ଇନି ସତୀ ଅଙ୍ଗ ।
ଶ୍ରୀକ୍ଷେତ୍ର ପାଳିକା ନାମ ପୁରାଣ ପ୍ରସଙ୍ଗ ॥

ଏ ଶଙ୍ଖେର ପୃଷ୍ଠ ଦେଶେ ସଦା ସୁଶୋଭିତା ।
ସର୍ବମଙ୍ଗଳା ଦେବୀ ଗୀର୍ବ୍ବାଣ ବନ୍ଦିତା ॥

ତାଁହାର ଉତ୍ତର ଭାଗେ ଆଛେ ସୁପ୍ରକାଶ ।
ଅର୍ଦ୍ଧାଶନୀ ନାମେ ଭଗବତୀର ଆବାସ ॥

ସେଖାନେ ଅଠାରନାଲା ଘାଟେର ନିକଟ ।
ଅଲମ୍ବା ଦେବୀର ଧାମ ନାଶେନ ସଂକଟ ॥

ଶଙ୍ଖେର ଦକ୍ଷିନଭାଗ ଦକ୍ଷିଣ କାଳିକା ।
ପୂର୍ବଦିଗେ ବିରାଜିତା ଦେବୀ ମରୀଚିକା ॥

ଶଙ୍ଖେର ପଶ୍ଚିମ ପାର୍ଶ୍ୱେ ହରଚଣ୍ଡୀ ନାମ ।
ଏହି ଚତୁଃସୀମା ଶଙ୍ଖ ଅପବର୍ଗ ଧାମ ॥

ଏଇ ଚତୁର୍ଦ୍ଦିଗେ ଭଗବତୀର ପ୍ରତିମା ।
କୈବଲ୍ୟ ବିଧାନ କର୍ତ୍ତ୍ରୀ ନାହିଁ ଗୁନ ସୀମା ॥

ନିଜ ନିଜ ଅସ୍ତ୍ରଶସ୍ତ୍ର କରିୟା ଧାରନ ।
ପୁରୁଷୋତ୍ତମ ପୁରୀ କରେନ ପାଳନ ॥

ଏ ସବ ଦେବୀର ମୂର୍ତ୍ତି କରିଲେ ଦର୍ଶନ ।
ଦଶ ଅଶ୍ୱମେଧ ତାର କରଗତ ହନ ॥

ଚତୁର୍ଦ୍ଦିଗେ ଅତି ଉଚ୍ଚ ପ୍ରାଚୀର ବେଷ୍ଟିତ ।
ଶ୍ରୀମନ୍ଦିର ଜଗନ୍ନାଥ ଯାତେ ବିରାଜିତ ॥

ସିଂହଦ୍ୱାରେ ଦ୍ୱାରିଭାବେ ପତିତପାବନ ।
ଦେଖେ ଶୁନେ ବୁଝି ଚିତ୍ର ପୁତ୍ତଳିକା ହନ ॥

ପରେ କାଶୀ ବିଶ୍ୱେଶ୍ୱର ଶିବଲିଙ୍ଗ ସାର ।
ଅଜ୍ଞାନ ନାଥେର ଲିଙ୍ଗ ମହିମା ଅପାର ॥

ମଣିମୟ ଚକ୍ର ନାରାୟଣେର ବସତି ।
ଶିଳାମୟ ବଟକୃଷ୍ଣ ଭଣ୍ଡ ଗନପତି ॥

ଅକୃତ୍ରିମ ଦିନମଣି ଦେବେର ପ୍ରତିମା ।
କ୍ଷେତ୍ର ଅଧିଷ୍ଠାତା ତିନି ଅନନ୍ତ ମହିମା ॥

ଇହାଁରା ସେ ସିଂହଦ୍ୱାରେ କରେନ ନିବାସ ।
ଦୃଷ୍ଟିମାତ୍ରେ ଭକତେର ପାପ ହୟ ନାଶ ॥

ତଥାୟ ଅକ୍ଷୟ ବଟ ନାମେ ଏକ ବୃକ୍ଷ ।
ଆଶ୍ରିତ ଜନେର ପାପରାଶି ନାଶେ ଦକ୍ଷ ॥

ତାହାର ଛାୟାୟ ଯେବା କ୍ଷନକାଲ ରୟ ।
ବ୍ରହ୍ମହତ୍ୟା କଲୁଷ ତଖନି ନାଶ ହୟ ॥

ଆର ଆଜି ନୃସିଂହ ରୂପେତେ ଜନାର୍ଦ୍ଦନ ।
ଯାହାର ନାମେତେ କ୍ଷେତ୍ର ବିଖ୍ୟାତ ଭୁବନ ॥

ଫଲତ ନୃସିଂହ କ୍ଷେତ୍ର ଲୋକେ ଏଇ କୟ ।
ନୃସିଂହ ନିବାସ ହେତୁ ଜାନିହ ନିଶ୍ଚୟ ॥

ଭୁବନେଶ୍ୱରୀ ଆର ସରସ୍ୱତୀ ମୂର୍ତ୍ତି ।
ଏକଇ ମନ୍ଦିରେ ତାଁରା ସଦା ପାନସ୍ଫୂର୍ତ୍ତି ॥

ସେଇ ସ୍ଥାନେ ମହାଲକ୍ଷ୍ମୀ ମୂର୍ତ୍ତି ଚମତ୍କାର ।
ଯାହା ଦୃଷ୍ଟେ କଷ୍ଟ ନଷ୍ଟ ହୟ ଅନିବାର ॥

ଅପର ଉତ୍ତର ଦ୍ୱାରେ ଦେଖ ନିବାସିନୀ ।
ନାମେତେ ଉତ୍ତରାୟନ ମହେଶମୋହିନୀ ॥

ଆର ଆର ଅନେକ ପ୍ରତିମା ଦେବତାର ।
ମନୁଷ୍ୟ ସ୍ଥାପିତ କିନ୍ତୁ ଅପୂର୍ବ ଆକାର ॥

ତତ୍‌ପରେ ଶ୍ରୀମନ୍ଦିର ସୁଚାରୁ ଗଠନ ।
ଯାହା ନିରେଖିଲେ ହୟ ସଫଲ ନୟନ ॥

ହେନ ବୁଝି ଶିଳ୍ପୀ ତାର ହଇୟାଛେ ସାର ।
ଯାହା ଦେଖେ ଯାତ୍ରୀଗନ କାଙ୍ଗାଲୀ ଅତୁର ॥

× × ×

ଆନନ୍ଦ ସଲିଳେ ଭାସେ ଦୁଃଖ କରେ ଦୂର ।।

ତାର ଅଗ୍ରତେ ନାଟ ମନ୍ଦିରର ଶୋଭା ।
ସୁରାସୁର ମନୁ ଜଗତେର ମନୋଲୋଭା ।।

ତଦଗ୍ରେ ବିରାଜେ ଜଗମୋହନ ମୋହନ ।
ମଣିର ନିକଟେ ଯେନ କାଞ୍ଚନ ଶୋଭନ ।।

ତାହାର ସମୀପେ ଭୋଗମନ୍ଦିର ମନ୍ଦିର ।
ସେଇ ସ୍ଥାନେ ଭୋଗ ହୟ କମଲା ପତିର ।।

ରନ୍ଧନେର ଶାଲା ପରେ ଆଛେୟ ବିଶାଲ ।
ସୁଦୃଶ୍ୟ ଦେଖିତେ କିନ୍ତୁ ଖଡେ ଢ଼ାଁକା ଚାଲ ।।

ସେ ଭୋଗ ମନ୍ଦିରାବଧି ସିଂହର ବରଜ ।
ବାଇଶଟା ସିଡ଼ିତେ ଗାନ୍ଥା ଯେତେ ଅତି ସୋଜ ।।

ଏ ସକଲ ପ୍ରଥମ ପ୍ରାଚୀର ସୁବେଷ୍ଟିତ ।
ଦ୍ୱିତୀୟ ବେଷ୍ଟନେ ଯାହା ଶୁନହ ନିଶ୍ଚିତ ।।

କୌଲିଛତ୍ର ସ୍ନାନମଞ୍ଚ ଅପୂର୍ବ ଆରାମ ।
ଭୁବନେ ବିଦିତ ସବେ ଅନ୍ତର୍ଦ୍ଧାନ ନାମ ।।

ମଞ୍ଚ ମଣ୍ଡପ ନାମେ ଆର ଏକ ସ୍ଥାନ ।
ଯେଖାନେ ବିଭୁର ହୟ ଭୋଗେର ବିଧାନ ।।

ଦ୍ୱିତୀୟ ବେଷ୍ଟନ ମଧ୍ୟେ ପାକଶାଲା ହୟ ।
ଉଭୟ ବାହିରେ ଦୋଲ ମଞ୍ଚ ମଣିମୟ ।।

ଯାହାତେ ଦୋଲେନ ଦୋଲ୍ ଗୋବିନ୍ଦ ବିଗ୍ରହ ।
ଭକତ ଜନେର ପ୍ରତି କରି ଅନୁଗ୍ରହ ।।

ଲକ୍ଷ୍ମୀ ଆର ସରସ୍ୱତୀ ଦକ୍ଷ ବାମ ଭାଗେ ।
ଅଷ୍ଟ ଧାତୁମୟ ମୂର୍ତ୍ତି ଶୋଭେ ଅନୁରାଗେ ।।

ଜଗନ୍ନାଥେର ଦୋଲ ତାହେ ନାହିଁ ହୟ ।
ତାହାର କାରନ ପରେ କହିବ ନିଶ୍ଚୟ ।।

ଏକ୍ଷଣେ ଦକ୍ଷିନ ପାର୍ଶ୍ୱେ କହିବ ବିସ୍ତାର ।
ପୁରୀ ମଧ୍ୟବର୍ତ୍ତୀ ସ୍ଥାନ ନିର୍ବାନ ଆଗାର ।।

ତାହାର ପଶ୍ଚିମ ସୀମା କରିୟା ଆବାସ ।
ହରଚଣ୍ଡୀ ଚଣ୍ଡରୂପା ଭସ୍ମର ପ୍ରକାଶ ।।

ଏ ଅବଧି ପୂର୍ବଦିଗେ ଶତଧନୁ ସ୍ଥାନ ।
ଫଳିତ ସେ ଚାରିଶତ ହସ୍ତ ପରିମାନ ।।

ତାହାର ପର୍ଯ୍ୟନ୍ତ ଭାବେ ଦକ୍ଷିନ କାଳିକା ।
ବିରାଜେନ କଳିକାଲ ଭୟ ବିନାଶିକା ।।

ଉତ୍ତରେ ଅକ୍ଷୟବଟ ଦକ୍ଷିନେ ଜଲଧି ।
ଦକ୍ଷିଣ ପାର୍ଶ୍ୱର ଏଇ ହଇଲ ଅବଧି ।।

ଏଇ ଚତୁଃସୀମା ପରିଛିନ୍ନ ଯେଇ ପୁରୀ ।
ପୁଣ୍ୟତୀର୍ଥ ପୁଣ୍ୟଧାମ ସର୍ବେର ଉପରି ।।

ଦେହତ୍ୟାଗେ ଅପବର୍ଗ ନିଃସନ୍ଦିଗ୍ଧେ ହୟ ।
ସ୍ନାନ ଦାନ ଜପ ହୋମ ଫଲେନ ଅକ୍ଷୟ ।।

ତନ୍ମଧ୍ୟେ ଅନ୍ତର୍ବେଦି ଅତୀବ ପ୍ରଶସ୍ତ ।
ତତ୍ ପରିସର ଶୁନ ଏକଶତ ହସ୍ତ ।।

ତାହାର ପଶ୍ଚିମ ସୀମା ଧରି କରି ବାସ ।
ମତ୍ସ୍ୟ ମାଧବ ହରି ପରମ ବିଘ୍ନନାଶ ।।

ପୂର୍ବ ସୀମା କରି ଶ୍ୱେତମାଧବ ବସତି ।
କିବା ଶୋଭା ମନଲୋଭା ଅପୂର୍ବ ମୂରତି ।।

ତନ୍ମଧ୍ୟେ ଆଛେ ମୁକ୍ତିଶିଲା ଏକ ଶିଲା ।
କ୍ଷେତ୍ର ପୁରୀ ସବୁର୍ଣ୍ଣେର ବୁଝି କଷ୍ଟିଶିଲା ।।

ଅନ୍ତର୍ବେଦି ମଧ୍ୟେ ଆଛେ ଅତି ମନୋହର ।
ଶ୍ୱେତଗଙ୍ଗା ଭୁବନ ବିଖ୍ୟାତ ସରୋବର ।।

ପ୍ରସାଦ ସେବନେ ଯଦି ଅପରାଧ ହୟ ।
କରିଲେ ତଦ୍‌ଜଲେ ସ୍ନାନ ପାପ ହୟ କ୍ଷୟ ।।

ଶ୍ୱେତରାଜ କୀର୍ତ୍ତି ହେତୁ ଶ୍ୱେତଗଙ୍ଗା ନାମ ।
ସେବକ ଜନେର ସିଦ୍ଧ ହୟ ମନସ୍କାମ ।।



# ଅଥ ପଞ୍ଚତୀର୍ଥ ବିଧାନ

ପଞ୍ଚତୀର୍ଥ ବିଧାନକର୍ତ୍ତା ପ୍ରଥମତ ଆଦ୍ୟ ମାର୍କଣ୍ଡେୟ ହ୍ରଦେ ସ୍ନାନତର୍ପନ ସମାପନ କରିୟା ଏ ହ୍ରଦେରେ ତୀରବର୍ତ୍ତୀ ମାର୍କଣ୍ଡେୟଶ୍ୱର ନାମକ ଶିବଲିଙ୍ଗ ଦର୍ଶନ ପୂର୍ବକ ଏ ତୀର୍ଥ ପରିକ୍ରମ କରିବେନ । ପରେ ତଥା ହଇତେ ମୌନାବଲମ୍ବନେ ଆଗମନ କରିୟା ଶ୍ରୀମନ୍ଦିର ଚାରିବାର ପ୍ରଦକ୍ଷିଣ କରିବେନ । ବଟମୂଲେ ଜଗନ୍ନାଥେର ପଞ୍ଚୋପଚାରେ ପୂଜା କରିବେନ, ତଦନନ୍ତର ଜଗନ୍ନାଥ ଓ ବଳଦେବ ମୂର୍ତ୍ତି ଦର୍ଶନ ଓ ପୂଜନ ଅପର ଜଗନ୍ନାଥ ନିକଟେ ସମୁଦ୍ର ସ୍ନାନେର ପ୍ରାର୍ଥନା କରିବେନ । ପରେ ଶ୍ରୀମନ୍ଦିର ହଇତେ ମୌନ ହଇୟା ସମୁଦ୍ରତୀରେ ଗମନ କରତ ପଥି ମଧ୍ୟେ ଉଗ୍ରସେନ ନାମକ ଏକ ମୂର୍ତ୍ତି ଯିନି ପ୍ରଭୁର ପାରିଷଦ ଏବଂ କ୍ଷେତ୍ର ପ୍ରାପ୍ତ ଜନେର ଯଦି ପାପ ଜନ୍ମେ ତାହାର ଦଣ୍ଡବିଧାନ କରେନ ତାଁହାର ସ୍ଥାନେ ସମୁଦ୍ର ସ୍ନାନେର ପ୍ରାର୍ଥନା କରିବେନ । ଅନନ୍ତର ତନ୍ନିକଟେ ହନୁମାନେର ଏକ ମୂର୍ତ୍ତି ଆଛେନ । ତାଁହାର ମନ୍ଦିର ପ୍ରଦକ୍ଷିଣ ପୂର୍ବକ ସମୁଦ୍ରତୀରେ ସ୍ୱର୍ଗଦ୍ୱାରେ ଗମନ କରିବେନ । ଯେ ସ୍ଥାନେ ବ୍ରହ୍ମା ସ୍ୱର୍ଗ ହଇତେ ଆସିୟା ପ୍ରଥମତ ରଥ ହଇତେ ଅବରୋହଣ କରେନ । ତଥାୟ ଯେ ସ୍ୱର୍ଗ ସୋପାନ ଛିଲ ତାହା ଏକ୍ଷଣେ ଲୁପ୍ତ ହଇୟାଛେ । ତାହାର ଚିହ୍ନ ନିମିତ୍ତ ଏକଟା ପ୍ରସ୍ତରମୟ ସ୍ତମ୍ଭ ଆଛେ; ତାହାକେ ପ୍ରଦକ୍ଷିନ କରିବେନ । ପରନ୍ତୁ ସମୁଦ୍ର ମଧ୍ୟେ କୃତ୍ୟା ରାକ୍ଷସୀ ଆଛେନ ଯିନି ପିପ୍ପଲାଦ ହଇତେ ଉତ୍ପନ୍ନା ଇବ ଏକ୍ଷନେ ତାହାର ଦର୍ଶନ ହୟନା । କିନ୍ତୁ ତଦୁଦ୍ଦେଶେ ମନ୍ତ୍ରପୂତ କରିୟା ଏକ ଖାନି ପ୍ରସ୍ତର ସମୁଦ୍ର ମଧ୍ୟେ ନିକ୍ଷେପ କରିତେ ହୟ । ତାହା ନା କରିଲେ ଏ ରାକ୍ଷସୀ ସମୁଦ୍ର ସ୍ନାନ ଜନା ପୁଣ୍ୟ ହରଣ କରେନ । ପରେ ସମୁଦ୍ରତୀରେ ସୁଦର୍ଶନେର ପୂଜା କରିୟା ଅଷ୍ଟ ଜଲପଦ୍ମ ନିର୍ମାଣ କରିବେନ । ଅନନ୍ତର ସମୁଦ୍ର ସ୍ନାନ ସଂକଳ୍ପ କରିୟା ସ୍ନାନ କରତ ପୂଜା ତର୍ପଣ ନାରାୟଣ ପୂଜା ଇତ୍ୟାଦି କର୍ମ ସମାପନାନ୍ତେ ପୁନର୍ବାର ସ୍ନାନ ପରେ ଇନ୍ଦ୍ରଦ୍ୟୁମ୍ନ ସରୋବର ସ୍ନାନ । ଏ ସରୋବରେ ଗମନ ସମୟେ ପଥି ମଧ୍ୟେ ନାରଦ ସ୍ଥାପିତ ଏକ ନୃସିଂହ ମୂର୍ତ୍ତି ଆଛେନ, ତାହାର ନିକଟେ ଏ ସରୋବର ସ୍ନାନେର ପ୍ରାର୍ଥନା କରିବେନ । ଅନନ୍ତର ସ୍ନାନ, ତର୍ପଣ, ପୂଜା ଶେଷେ ନୀଲକଣ୍ଠ ଦୃଷ୍ଟି କରିୟା ପୁନର୍ବାର ଜଗନ୍ନାଥ ଦର୍ଶନ କରିବେନ । ଏଇ ସକଲ କର୍ମେର ନାମ ପଞ୍ଚତୀର୍ଥ । କିନ୍ତୁ ପଞ୍ଚତୀର୍ଥେର ପ୍ରଧାନ ପାଞ୍ଚ କର୍ମ ଏଇ ଯେ ଆଦ୍ୟ ମାର୍କେଣ୍ଡେୟ ହ୍ରଦେ ସ୍ନାନ, ଜଗନ୍ନାଥ ଏବଂ ବଳଦେବ ଦର୍ଶନ, ସମୁଦ୍ର ସ୍ନାନ, ଆର ଇନ୍ଦ୍ରଦ୍ୟୁମ୍ନ ସରୋବରେ ସ୍ନାନ ।



